# ବୃହତ୍ ଚୂର୍ଣ୍ଣକାର୍ଣ୍ଣବ

( ଆୟୁର୍ବେଦୀୟ ମତେ )




ଓଡ଼ିଶା କୋହିନୁର ପ୍ରେସ୍ କର୍ତ୍ତୃକ

( ଆୟୁର୍ବେଦୀୟ ମତେ )

# ବୃହତ୍ ଚୂର୍ଣ୍ଣକାର୍ଣ୍ଣବ

## ପ୍ରଥମ ଭାଗ

ମୁନ୍‌ଶି ହକିମ ଶେଖ୍ ଅବ୍‌ଦୁଲ ଅଜିଜ୍ ଆଶକ ଲିଖିତ—
ସଂଗୃହୀତ

ପ୍ରକାଶକ—ଓଡ଼ିଶା କୋହିନୂର ପ୍ରେସ ପ୍ରୋପ୍ରାଇଟର
ଦ୍ୱିତୀୟ ସଂସ୍କରଣ—୧୯୫୧



ସମସ୍ତ ପ୍ରକାର ପୁସ୍ତକ ଓ ପଞ୍ଜିକା ମିଳିବାର ଠିକଣା—

**ଓଡ଼ିଶା କୋହିନୂର ପ୍ରେସ**

**ପୁସ୍ତକ-ଭଣ୍ଡାର**

[illegible] ପୋ: [illegible]

ମୂଲ୍ୟ ୦ ।୵ ଦଶ ଅଣା

# ସୂ ଚୀ ପ ତ୍ର



— ଚୂର୍ଣ୍ଣକାଣ୍ଡର ପ୍ରଥମ ଭାଗ ସୂଚୀପତ୍ର ସମାପ୍ତ —



# ବୃହତ
# ଚୂର୍ଣ୍ଣାର୍ଣ୍ଣବ



୧—ସୁଦର୍ଶନ ଚୂର୍ଣ୍ଣ (ଜୀର୍ଣ୍ଣ ଓ ବିଷମ ଜ୍ୱରରେ)

କୃଷ୍ଣାଗୁରୁ (ଅଗୁରୁ) ହଳଦୀ, ଦେବଦାରୁ, ବଚ, ମୁଥା, ହରଡ଼ା, ଦୁଲ୍ଲଭି, କକଡ଼ାଶୃଙ୍ଗୀ, ଅଙ୍କଗନ୍ତି, ଶୁଣ୍ଠି, ଭବଭଦରିଆ, ଘରପୋଡ଼ିଆ, ନିମ୍ବଛେଲି, ବଣପିପ୍ଳାମୂଳ, କୁରୁବେଲ; ଗନ୍ଧଶୁଣ୍ଠି, କୁଡ଼, ପିପ୍ପଳୀ, ମୃଗାମୂଳ, ଷଣ୍ଢାକୋଚୁଆଁ ଛେଲି, ଯଷ୍ଟିମଧୁ, ସଜନା ମଞ୍ଜି, କଇଁମୂଳ, ଇନ୍ଦ୍ରଯବ, ଜଟାଜଙ୍ଘ, ଦାରୁ ହଳଦୀ, ରକ୍ତଚନ୍ଦନ, ପଦ୍ମକାଷ୍ଠ, ସରଳକାଷ୍ଠ, ବେଣା ଚେର, ଡ଼ାଳଚିନି, ସୌରାଷ୍ଟ୍ର ମୃତ୍ତିକା (ଶୁଖିଲା ପଙ୍କ ଚେକା) ଶାଳପର୍ଣ୍ଣୀ, ଯୁଆଣୀ, ଅତୋଶୀ, ବେଲ ଛେଲି, ମରିଚ, ପସାରୁଣୀ ପତ୍ର, ଅଁଳା, ଗୁଳୁଚି, କଟ୍‌କୀ, ଧଳାଚିତା ମୂଳ, ପଟୋଳପତ୍ର ଓ କୃଷ୍ଣପର୍ଣ୍ଣୀ, ଏମାନଙ୍କର ପ୍ରତ୍ୟେକରଚୂର୍ଣ୍ଣସମାନସମାନଭାଗରେଏକତ୍ରକରିବଏବଂସେଥିରେ ଏହି ଚୂର୍ଣ୍ଣ ସମଷ୍ଟିର ଅର୍ଦ୍ଧେକ ପରିମାଣରେ ଚିରାଇତା ଚୂର୍ଣ୍ଣମିଶାଇବ। ଏହାର ମାତ୍ରା ଏକମଷା ଠାରୁ ଛଅମଷା ପର୍ଯ୍ୟନ୍ତ। ଅନୁପାନ କଞ୍ଚା ଜଳ। ଏହା ସେବନରେ ସର୍ବପ୍ରକାର ଜୀର୍ଣ୍ଣ ଓ ବିଷମ ଜ୍ୱର ଏବଂ ସ୍ଥାନ ଦୋଷଜ ବା ଜଳଦୋଷଜ ଜ୍ୱର, ବିରୁଦ୍ଧଔଷଧସେବନ ଜନିତ ଜ୍ୱର ଏବଂ ପ୍ଲୀହା ଯକୃତ ଓ ଗୁଲ୍ମ ଶୀଘ୍ର ଉପଶମିତ ହୁଏ।



୨—ରସାୟନାମୃତ ଚୂର୍ଣ୍ଣ (ଗ୍ରହଣୀରେ)

ଶୋଧିତ ଗନ୍ଧକ ୨ତୋଳା, ଶୋଧିତ ପାରଦ ୧ତୋଳା, ଏକତ୍ରେ କଜ୍ଜଳୀ କରିବ ପରେ ଶୁଣ୍ଠି, ପିପ୍ପଳୀ ଓ ମରିଚ ପ୍ରତ୍ୟେକ ଦ୍ରବ୍ୟର ଚୂର୍ଣ୍ଣ ୨ତୋଳା, ପଞ୍ଚଲବଣ ପ୍ରତ୍ୟେକରେ ୨୪ ତୋଳା, ଏବଂ ଗଞ୍ଜାଇ ଚୂର୍ଣ୍ଣ ୧୬ ତୋଳା ସହ କଜ୍ଜଳୀ ସହ ଉତ୍ତମରୂପ

ମିଶାଇବ । ଏହି ଚୂର୍ଣ୍ଣ ୨ମଷା ଠାରୁ ୫ ମଷାଉକ କାଞ୍ଜିପାଣି ସହିତ ସେବନ କଲେ ଅଗ୍ନିର ଦୀପ୍ତ ହୁଏ । ଏହା ସେବନ କରିବା ସମୟରେ ପଥ୍ୟାପଥ୍ୟର ବିଗ୍ଭର ନାହିଁ । ଏହି ଚୂର୍ଣ୍ଣ ବାତ,ପିତ୍ତ, କଫ ବିକାର, ଗ୍ରନ୍ଥିରୋଗ, ପ୍ଲୀହା,ଆମବାତ,ଛ ପ୍ରକାରମଳକଣ୍ଠିକ ରୋଗ, ସକଳପ୍ରକାର କୁଷ୍ଠରୋଗ, ବାତରକ୍ତ ଓ କଣ୍ଠରୋଗ ହରଣ କରେ । ଏହା ସେବନ କରିବା ବ୍ୟକ୍ତି ଦୀର୍ଘଜୀବୀ ହୁଏ । କାମପଣ୍ଡି ସୁନ୍ଦର ହୁଏ,ଏହାର ପ୍ରଭାବରୁମନୁଷ୍ୟ ଗମ୍ଭୀର ସ୍ୱର,ମୋଧବାବଳ-ବାନ୍, ବୀର୍ଯ୍ୟବାନ୍ ଓ ଶ୍ରୁତିଧର ଶକ୍ତି ସମ୍ପର୍ଣ୍ଣ ହୁଏ ।



୩—କାମେଶ୍ୱର ଚୂର୍ଣ୍ଣ ( ଗ୍ରହଣୀ ଓ ବୀର୍ଯ୍ୟସ୍ତମ୍ଭରେ )

ଅଭ୍ର ଭସ୍ମ,ତାଳମୂଳୀ,କୁଡ଼,କୁନ୍ଦୁର,କାଙ୍କଡ଼, ଗୋକ୍ଷୁରମଞ୍ଜି ବାଇଡ଼ଙ୍କ ମଞ୍ଜି,କୋଇଲେଖା ମଞ୍ଜୀ,ମେଥୀ,ଅଜମୋଦା, ଯୁଆଣୀ, ବ୍ରହ୍ମଜଟିଆ, ଗରଗଡ଼, ଅଶ୍ୱଗନ୍ଧମୂଳ, କଦଳୀ ମୂଳ, ଜାଇଫଳ, ଚିତାମୂଳ, ତ୍ରିକଟୁ, ଶତାବରୀ, ହରିଡ଼ା, ବାହାଡ଼ା,ଅଁଳା, ଗଜ ପିପ୍ପଳୀ,ବଇ, ଗଣି, ଧନିଆ, ମୋଚରସ, ଶିମୂଳୀ କନ୍ଦା,ବାସୁଙ୍ଗ ଗଢଶୁଣ୍ଠି,ଯାଷ୍ଟିମଧୁ, ଗୁଡ଼ତ୍ୱକ,ତେଜପତ୍ର, ଅଳାଇଚ,ନାଗେଶ୍ୱରି ପୁରୁଣୀ, କଳାଜୀରା, ଜୀରା, ବଡ଼ଜୀରା, ସୈନ୍ଧବ,ଭୃଙ୍ଗରାଜଦ୍ରାକ୍ଷା ଓ ଭୂଇଁ କଖାରୁ,ଏସବୁ ଦ୍ରବ୍ୟ ପ୍ରତ୍ୟେକ ସମାନ ଭାଗରେ ଗ୍ରହଣ କରି ଚୂର୍ଣ୍ଣ କରିବ । ଏହି ଚୂର୍ଣ୍ଣର ସମପରିମିତଗଞ୍ଜାଇ ଚୂର୍ଣ୍ଣମିଶାଇବ । ସମସ୍ତ ଚୂର୍ଣ୍ଣ ମିଶି ଯେତେ ହେବ, ତାର ଦ୍ୱିଗୁଣ ଚିନି, ଉପଯୁକ୍ତ ପରିମ ଶେଢିଅ ଓ ମହୁମିଶାଇ ଚୂର୍ଣ୍ଣ କରିବ । ପାଞ୍ଚମଷାଠାରୁ ଦଶ ମଷାଉକସେବନ କରିବ । ଏହାବୀର୍ଯ୍ୟସ୍ତମ୍ଭରେ ଗାଈ ଦୁଗ୍ଧ ସହିତ ଖାଇବ । ସୌନ୍ଦର୍ଯ୍ୟ ବୃଦ୍ଧି କରେ, ଅଗ୍ନିମାନ୍ଦ୍ୟ, ଶୁକ୍ରବର୍ଦ୍ଧକ, ପୁଷ୍ଟି କାରକ,ଯକ୍ଷ୍ମରୋଗ ନିବାରଣକ,କାସ ଶ୍ୱାସ ଅତିସାର ଅର୍ଶଗ୍ରହଣୀ ଓ ସକଳପ୍ରକାର ପ୍ରମେହନିବାରଣ କରେ । ଏହା ସେବନ କରିବ

ବ୍ୟକ୍ତି ବିକଳତା ଶକ୍ତି ବର୍ଦ୍ଧିତହୁଏ ଏହା ଆନନ୍ଦପ୍ରଦ କାମବର୍ଦ୍ଧକ ଓ ରାଜାମାନଙ୍କର ସର୍ବଦା ସେବନ ଯୋଗ୍ୟ ଅଟେ ।



୪—ହିଙ୍ଗାଷ୍ଟକ ଚୂର୍ଣ୍ଣ ( ଅଗ୍ନିମାନ୍ଦ୍ୟରେ )

ଶୁଣ୍ଠୀ, ପିପ୍ପଳୀ ମରିଚ, ଯୁଆଣୀ, ସୈନ୍ଧବ,ଲବଣ, ଜୀର, କଳାଜୀର ଓ ହିଙ୍ଗୁ ପ୍ରତ୍ୟେକର ଚୂର୍ଣ୍ଣ ସମାନଭାଗରେ ମିଶ୍ରିତକରି ଭୋଜନର ପ୍ରଥମ ଗ୍ରାସରେ ଘିଅ ସଙ୍ଗରେ ଖାଇଲେ ଅଗ୍ନିବୃଦ୍ଧି ଓ ବାତରୋଗ ବିନଷ୍ଟ ହୁଏ । କେହି କେହି କହନ୍ତି ଅନ୍ନ ଉପରେ ଏହି ଚୂର୍ଣ୍ଣକୁ ପକାଇ ଘିଅରେ ଗୋଳାଇ ତିନି ଗ୍ରାସ ଅନ୍ନ ପ୍ରଥମରେ ଭୋଜନ କରିବା କର୍ତ୍ତବ୍ୟ । ମାତ୍ରା ଦଶରତିଠାରୁ ଅଢ଼ାଇମାଷ ପର୍ଯ୍ୟନ୍ତ ।



୫—କ୍ଷାରାଷ୍ଟକ ଚୂର୍ଣ୍ଣ ( ଗୁଲ୍ମରୋଗେ )

ପଲାଶ, ସିଜୁ, ଅପାମାର୍ଗ, ତେନ୍ତୁଳି, ଅରଖ, ଖଇ,ତାଳ, ଯବକ୍ଷାର ଓ ସାଜିକ୍ଷାର ଏହି ଆଠପ୍ରକାର କ୍ଷାରକୁ କ୍ଷାରାଷ୍ଟକ କହନ୍ତି । ମାତ୍ରା ଗୁଞ୍ଜର ଅର୍ଦ୍ଧ ପର୍ଯ୍ୟନ୍ତ । ଅନୁପାନ—ବାତାଧିକ୍ୟ ଗୁଲ୍ମେ ଅଳ୍ପ ଉଷ୍ଣ ଜଳ ପିତ୍ତାଧିକରେ ଘୃତ ଶ୍ଳେଷ୍ମାଧିକେ ଗୋମୂତ୍ର ତ୍ରିଦୋଷଜ ପ୍ରକୋପରେ କାଞ୍ଜି ଏବଂ ଉଦାବର୍ତ୍ତ ପ୍ଲୀହା ଅଗ୍ନିମାନ୍ଦ୍ୟ ଓ ଶୋଥାଦି ରୋଗରେ ଶୀତଳ ଜଳ ସହିତ ସେବନ କରିବ ।



୬—ଅଗ୍ନିମୁଖ ଚୂର୍ଣ୍ଣ ( ଅଗ୍ନିମାନ୍ଦ୍ୟରେ )

ହିଙ୍ଗୁ ୧ ଭାଗ, ବଚ ୨ ଭାଗ, ପିପ୍ପଳୀ ୩ ଭାଗ, ଶୁଣ୍ଠୀ ୪ ଭାଗ, ଯୁଆଣୀ ୫ ଭାଗ, ହରଡ଼ା ୬ ଭାଗ, ଚିତାମୂଳ ୭ ଭାଗ, ଓ କୁଡ଼ ୮ ଭାଗ, ଚୂର୍ଣ୍ଣ କରିନେବ । ମାତ୍ରା ୫ ରତିଠାରୁ ମାଷା ପର୍ଯ୍ୟନ୍ତ । ଅନୁପାନ ଦହିପାଣି ସୁରା ଓ ଗରମଜଳ ସହିତରେ ସେବନ କଲେ ଉଦାବର୍ତ୍ତ, ଅଜୀର୍ଣ୍ଣ, ପ୍ଲୀହା, ଉଦର,ଅର୍ଶ,ଅଗ୍ନି

ମାନ୍ଦ୍ୟ ଗୁଳ୍ମ, ଶେଷ୍ମ ବିକୃତ ବିଷଦୋଷ, ଯକ୍ଷ୍ମା ଶ୍ୱାସ କାସ ଓ ବାୟୁ ପ୍ରଶମିତ ହୁଏ ।



୭—ଏଳାଦି ଚୂର୍ଣ୍ଣ ( ଯକ୍ଷ୍ମା ରୋଗରେ )

ଅଳାଇଚ, ତେଜପତ୍ର, ନାଗେଶ୍ୱର ଓ ଲବଙ୍ଗ ଏ ସମସ୍ତରୁ ଏକ ଏକ ଭାଗ, ପିଣ୍ଡ ଖର୍ଜୁର ଦୁଇଭାଗ ଏବଂ ଦ୍ରାକ୍ଷା ଯାଷ୍ଟିମଧୁ ପିପ୍ପଳୀ ଓ ଚନ୍ଦନ ପ୍ରତ୍ୟେକ ଚାରି ଭାଗ, ଏହାର ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ଏହି ଚୂର୍ଣ୍ଣ ଉପଯୁକ୍ତ ପରିମାଣରେ ମଧୁ ସହିତ ସେବନ କଲେ ଯକ୍ଷ୍ମା ରୋଗ ନିବାରିତ ହୁଏ ।



୮—ଅଲଂଷାଦ୍ୟ ଚୂର୍ଣ୍ଣ ( ଆମବାତରେ )

ମୁଣ୍ଡିତକା, ଗୋଖୁରା, ଗୁଡ଼ୁଚି, ବୃଦ୍ଧଦାରକ ମଞ୍ଜୀ, ପିପ୍ପଳୀ, ତ୍ରିବୃତ୍, ମୁଥା, ବରୁଣମୂଳ, ପୁନର୍ଣ୍ଣବା, ତ୍ରିଫଳା, ଓ ଶୁଣ୍ଠି ପ୍ରତ୍ୟେକ ସମଭାଗ ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ଚାରିଅଣା ମାତ୍ରାରେ ଦହି କାଞ୍ଜୀ ଦୁଧ ଅଥବା ମାଂସ ରସଅନୁପାନରେ ଖାଇବ । ଏହାଦ୍ୱାରା ଆମବାତ ସନ୍ଧିଗତ ବାତ ଦେବିକ ପ୍ଳୀହା, ଗୁଳ୍ମ, ଉଦର, ଅନାହ, ଅର୍ଶ ଏବଂ ଅଗ୍ନିମାନ୍ଦ୍ୟ ପ୍ରଭୃତି ପୀଡ଼ା ଉପଶମ ହୁଏ । ଏହା ବଳକାରକ ଓ ଅଗ୍ନି ବର୍ଦ୍ଧକ ।



୯—ଶଟ୍ୟାଦ୍ୟ ଚୂର୍ଣ୍ଣ ( ଅର୍ଶରେ )

ତ୍ରିକଟୁ, ଚିତାମୂଳ, ଭାଲିଆମୁଣ୍ଡି, ବିଡ଼ଙ୍ଗ, ଶଶି ଓ ହରିଡ଼ା, ଏସବୁ ଦ୍ରବ୍ୟ ସମାନ ଭାଗରେ ଚୂର୍ଣ୍ଣ କରିବ । ଏହି ଚୂର୍ଣ୍ଣ ସମପରିମିତ ପୁରୁଣା ଗୁଳ ସହିତ ମିଶାଇ ସେବନ କଲେ ଅର୍ଶ, କୁଷ୍ଠ, ଗରବିଷ, ଶୋଥ, ମଳରୋଧ, ଅଗ୍ନିମାନ୍ଦ୍ୟ, କ୍ରିମି ଓ ପାଣ୍ଡୁ ରୋଗ ବିନଷ୍ଟ ହୁଏ ।



### ୧୦—ସମଶର୍କରା ଚୂର୍ଣ୍ଣ ( ଅର୍ଶରେ )

ଶୁଣ୍ଠୀ ୭ ତୋଳା, ପିପ୍ପଳୀ ୭ ତୋଳା, ମରିଚ ୫ ତୋଳା, ନାଗେଶ୍ୱର ୪ ତୋଳା, ତେଜପତ୍ର ୩ ତୋଳା, ଗୁଡ଼ତ୍ୱକ ୨ ତୋଳା ଅଳାଇଚ ୧ ତୋଳା, ଏବଂ ମିଶ୍ରି ୨୭ ତୋଳା, ଏସବୁ ଏକତ୍ର ଚୂର୍ଣ୍ଣ କରିବ । ଏହା ଅର୍ଦ୍ଧତୋଳା ପରିମାଣରେ ପ୍ରତିଦିନ ସେବନ କଲେ ଅର୍ଶ, ଅଗ୍ନିମାନ୍ଦ୍ୟ, ଗୁଳ୍ମ, ଅରୁଚି, ଶ୍ୱାସ, କଣ୍ଠରୋଗ ଓ ହୃଦ୍ରୋଗ ବିନଷ୍ଟ ହୁଏ ।



### ୧୧—ଅବିପତ୍ତିକର ଚୂର୍ଣ୍ଣ (ଅମ୍ଳପିତ୍ତରେ)

ତ୍ରିକଟୁ, ତ୍ରିଫଳା, ମୁଥା, ବିଡ଼ଙ୍ଗ, ଅଳାଇଚ, ତେଜପତ୍ର, ପ୍ରତ୍ୟେକ ଚୂର୍ଣ୍ଣ ୧ ତୋଳା, ଲବଙ୍ଗଚୂର୍ଣ୍ଣ ୧୦ ତୋଳା, ତ୍ରିବୃଡ଼ୀମୂଳ ଚୂର୍ଣ୍ଣ ୪୦ ତୋଳା, ଚିନି ୬୦ ତୋଳା ଏ ସମ, ଦ୍ରବ୍ୟ ଏକତ୍ର ମିଶ୍ରିତ କରି ସ୍ନିଗ୍ଧ ଭାଣ୍ଡରେ ରଖିବ । ଏହି ଭୋଜନର ପ୍ରଥମେ ଓ ଶେଷରେ ଉପଯୁକ୍ତ ପରିମାଣରେ ସେବନ କରନ୍ତୁ । ଅମ୍ଳପିତ୍ତ, ଶୂଳ, ମଳ ଓ ମୂତ୍ରରୋଧ, ଅଗ୍ନିମାନ୍ଦ୍ୟ ସମ୍ବନ୍ଧ ରୋଗ ସମୂହ ଏବଂ ପ୍ରମେହ ଓ ଅର୍ଶ ପ୍ରଭୃତି ରୋଗର ଉପଶମ ହୁଏ । ଅନୁପାନ ଘୃତ, ମଧୁ ଏବଂ ଶୀତଳ ଜଳ ବ ନାରିକେଳ ଜଳ ।



### ୧୨—ହିଙ୍ଗ୍ୱାଦି ଚୂର୍ଣ୍ଣ (କଫାତିସାରରେ)

ହିଙ୍ଗୁ, ସୌବର୍ଚ୍ଚଳ ଲବଣ, ତ୍ରିକଟୁ, ହରିଡ଼ା, ଅତୋଷୀ ଓ ବଚ, ଏହି ସକଳ ଦ୍ରବ୍ୟର ଚୂର୍ଣ୍ଣ ଉପଯୁକ୍ତ ପରିମାଣରେ ଉଷ୍ଣଜଳ ସହିତ ସେବନ କଲେ ଶ୍ଲେଷ୍ମଜ ଅତିସାର ନିବାରିତ ହୁଏ ।



୧୩—ଅଶ୍ୱଗନ୍ଧାଦ୍ୟ ଚୂର୍ଣ୍ଣ [ ଗଳକ୍ଷୟରେ ]

ଅଶ୍ୱଗନ୍ଧା, ଗୁଡ଼ୁଚ, ଶତମୂଳୀ, ବଣମୂଳ, ଶ୍ୱେତବଳା, ପିତବଳା, କୁଡ଼ ଓ ଗୋରକ୍ଷ ଗୁଞ୍ଜଲ ଏହି ସମୁଦାୟ ଦ୍ରବ୍ୟ ସମଭାଗ ଏକତ୍ର ମିଶ୍ରିତ କରି ଉପଯୁକ୍ତ ପରିମାଣରେ ସେବନ କଲେ କ୍ଷୟରୋଗ ନିବାରିତ ହୁଏ । ଏହି ଔଷଧ ବ୍ୟବହାରେ ଦୁଗ୍ଧ ଓ ମାଂସରସ ପଥ୍ୟ ବ୍ୟବସ୍ଥା କରିବ ।



୧୪—କପିତ୍ଥ ଆଷ୍ଟକ ଚୂର୍ଣ୍ଣ ( ଗ୍ରହଣୀରେ )

ଯୁଆଣୀ, ପିପ୍ପଳୀ ମୂଳ, ଡାଳଚିନି, ତେଜପତ୍ର, ଅଳାଇଚ, ନାଗେଶ୍ୱର, ଶୁଣ୍ଠୀ, ମରିଚ, ଚିତାମୂଳ, କୁଟବେଲ, କୃଷ୍ଣଜୀରା, ଧନିଆ, ଓ ସୌବର୍ଚ୍ଚଳ ଲବଣ, ପ୍ରତ୍ୟେକ ଏକ ଏକ ତୋଳା ଓ ଅମ୍ଳବେତସ, ଧାତୁକୀ ଫୁଲ, ପିପ୍ପଳୀ, ବେଲଶୁଣ୍ଠା, ଡାଳିମ୍ବ ଛେଲି ଓ କେନ୍ଦୁ ଶୁଣ୍ଠା, ଏଥିରୁ ପ୍ରତ୍ୟେକ ତିନିତୋଳା, ଚିନି ଛ ତୋଳା ଏବଂ କଇଁଥ ଶଶ ଚୂର୍ଣ୍ଣ ଆଠତୋଳା ଏକତ୍ର ମିଶ୍ରିତ କରି ସେବନକଲେ ଅତିସାର, ଗ୍ରହଣୀ କ୍ଷୟ, ଗୁଳ୍ମ, କଣ୍ଠରୋଗ, ଶ୍ୱାସ, କାସ, ଅରୁଚି ଓ ହିକ୍କା ରୋଗ ପ୍ରଶମିତ ହୁଏ ।



୧୫—ବ୍ୟୋଷାଦ୍ୟ ଚୂର୍ଣ୍ଣ ( ପୀନସରେ )

ବ୍ୟୋଷ । ( ଶୁଣ୍ଠୀ, ପିପ୍ପଳୀ ଓ ମରିଚ ) ଏବଂ ଚିତା-ମୂଳ, ତାଳିଶପତ୍ର, ତେନ୍ତୁଳ, ଅମ୍ଳ, ବେତସ, ଗୁଞ୍ଜିକାଠ ଓ କଳାଜିରା, ପ୍ରତ୍ୟେକ ଏକ ତୋଳା ଲେଖାଏଁ, ଅଳାଇଚ, ଡାଳଚିନି ଓ ତେଜପତ୍ର ପ୍ରତ୍ୟେକ ଦୁଇମଷା, ଏବଂ ପୁରୁଣା ଗୁଡ଼ ନଅତୋଳା ଛ ମଷା, ଏହି ସବୁ ଦ୍ରବ୍ୟକୁ ଏକତ୍ରରେ ମର୍ଦ୍ଦନ କରି ତାହା ଉପଯୁକ୍ତ ମାତ୍ରାରେ ଗରମ ଜଳ ସହିତରେ ପାନ କଲେ ପୀନସ ଓ ତାହାର ଉପଦ୍ରବ, ଶ୍ୱାସ ଓ କାସ ପ୍ରଶମିତ ହୁଏ

୧୬—କଣାଦ୍ୟ ଚୂର୍ଣ୍ଣ ( ଶ୍ଳୀପଦରେ )

ପିପ୍ପଳୀ, ବଚ, ଦେବଦାରୁ, ପୁନର୍ଣ୍ଣବା ଓ ଚବଲଛେଲି, ପ୍ରତ୍ୟେକ ଦ୍ରବ୍ୟ ସମଭାଗ ଓ ସକଳ ସମାନ ବୃଦ୍ଧଦାରଙ୍କ ମଞ୍ଜୀ ଏକତ୍ର ଚୂର୍ଣ୍ଣ କରି ତିନିରତି ମାତ୍ରାରେ ତାହା କାଞ୍ଜୀ ସହିତ ସେବନ କଲେ ଶ୍ଳୀପଦ ବିନଷ୍ଟ ହୁଏ ।



୧୭—ସାମୁଦ୍ରାଦ୍ୟ ଚୂର୍ଣ୍ଣ ( ଶୂଳ ରୋଗରେ )

ପଞ୍ଚଲବଣ, ଯବକ୍ଷାର, ସାଚୀକ୍ଷାର, ଦନ୍ତୀମୂଳ, ଲୌହଭସ୍ମ, ମଣ୍ଡୁର, ନିଶୁନ୍ଦି ମୂଳ ଏବଂ ଓଲଅ ପ୍ରତ୍ୟେକ ଦ୍ରବ୍ୟ ସମଭାଗରେ ନେଇ ତାହା ସର୍ବସମଷ୍ଟିର ଚତୁର୍ଥାଂଶ ପରିମିତ ମିଳିତ ଦହିଦୁଧ ଓଗୋମୂତ୍ରପ୍ରତ୍ୟେକଟିରସମଭାଗସହିତମୃଦୁଅଗ୍ନିରେପାକକରିବ ଏବଂ ଚୂର୍ଣ୍ଣବତ୍ ହେଲେ ଓଜନରେ ଦୁଇଅଣା ବା ଚାରିଅଣା ମାତ୍ରାରେ ଉଷ୍ଣଜଳ ସହ ସେବନ କଲେ ଏହା ଯାବତୀୟ ଶୂଳ ନାଶକ, ଯକୃତ୍, ପ୍ଳୀହା, ଗୁଳ୍ମ ଓ ଅଷ୍ଠିଲା ପ୍ରଭୃତି ନିବାରଣ ହୁଏ ।



୧୮—ଜୀରକାଦ୍ୟ ଚୂର୍ଣ୍ଣ ( ଗ୍ରହଣୀରେ )

ଜୀରା, ଠାଙ୍ଗଣାଖଇ, ମୁଥା, ଅଜାନ ବନ୍ଧ, ବେଲଶୁଣ୍ଠି, ଧନିଆଁ, କୁଡବେଲ, ଶତ୍ରପ, ଡାଳିମ୍ବ ଛେଲି, ପିତା କୁରୁଆଁ ଛେଲି, ବରାହ କାନ୍ତା, ଧାତୁକୀ ଫୁଲ, ନିଳକଣ୍ଠ, ଡାଲଚିନି, ତେଜପତ୍ର, ଅଳାଇଚ, କ୍ଷିମିଲ ଅଠା, ଇନ୍ଦ୍ରଯବ, ଅଭ୍ର, ଗନ୍ଧକ ଓ ପାରଦ, ପ୍ରତ୍ୟେକ ଦ୍ରବ୍ୟ ଏବଂ ସର୍ବସମଷ୍ଟିର ସମାନ ଜାଇଫଳ ଚୂର୍ଣ୍ଣ, ଏ ସମୁଦାୟ ଏକତ୍ର ମିଶ୍ରିତ କରି ଉତ୍ତମ ରୂପେ ମର୍ଦ୍ଦନ କରିନେବ ଏହି ଚୂର୍ଣ୍ଣ ସେବନ କଲେ ଦୁର୍ନିବାର ଗ୍ରହଣୀ, ସର୍ବ ପ୍ରକାର ଅତିସାର, କାମଳ, ପାଣ୍ଡୁ ଓ ମନ୍ଦାଗ୍ନି ବିନଷ୍ଟ ହୁଏ ।



୧୯—ସ୍ପୃକ୍କାଦ୍ୟ ଚୂର୍ଣ୍ଣ ( ହୃଦ୍ରୋଗରେ ]

ଶୁଳ୍କ, ଘୃତ ଓ ପିପ୍‌ପଳୀର ଚୂର୍ଣ୍ଣ ସମଭାଗରେ ଏକତ୍ର ମିଶ୍ରିତ କରି ଘିଅ ସହିତ ଉପଯୁକ୍ତ ମାତ୍ରାରେ ଲେହନ ( ଜିହ୍ୱା ଦ୍ୱାରା ରସ ଗ୍ରହଣ ବା ଘୁଟିବା ) କଲେ କଫଜ, ହୃଦ୍ରୋଗ ଓ ତାହାର ଉପଦ୍ରବ୍ୟ ସକଳ ଆଶୁ ( ଶୀଘ୍ର ) ପ୍ରଶମିତ ହୁଏ ।



୨୦—ନାଗବଲ୍ଲ୍ୟାଦ୍ୟ ଚୂର୍ଣ୍ଣ ( ଧ୍ୱଜ ଭଙ୍ଗରେ )

ପାନ ମୂଳ, ବର ମୂଳ, ମୁଗ୍‌ମୂଳ, ଜାଫ୍ରିନି, ଯାଇଫଳ, ମୁଗମାଂସୀ, ଅପାମାର୍ଗ ମଞ୍ଜୀ, କାଙ୍କୋଲ, କ୍ଷୀର କାଙ୍କୋଲ, କଙ୍କୋଳ, ବେଣାମୂଳ, ଯାଷ୍ଟିମଧୁ ଓ ବଚ, ଏଥିରୁ ପ୍ରତ୍ୟେକର ସମଭାଗ ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ଦୁଇଅଣା ପରିମାଣରେ ଶୟନର ଅଧଘଣ୍ଟା ପୂର୍ବେ ଦୁଧସହିତ ସେବନ କରିଲେ ବୀର୍ଯ୍ୟସ୍ତମ୍ଭ ହୁଏ



୨୧—ଏଲାଦ୍ୟ ଚୂର୍ଣ୍ଣ ( ପ୍ରମେହରେ )

ଅଳାଇଚ, ଶିଳାଜତୁ, ପିପ୍‌ପଳୀ, ଓ ପାଷାଣଭେଦ, ଏଥିରୁ ସମପରିମାଣ ଚୂର୍ଣ୍ଣକରି ଅଧତୋଳା ମାତ୍ରାରେ ଚାଉଳଧୁଆ ପାଣି ସହିତ ସେବନ କଲେ ପ୍ରମେହ ଆଶୁ ଉପଶମ ହୁଏ ।



୨୨—ଭୂଷଣାଦ୍ୟ ଚୂର୍ଣ୍ଣ ( ମସୁରିକାରେ )

ମରିଚ, ପିପ୍‌ପଳୀ ମୂଳ, କୁଡ଼, ଗଜପିପ୍‌ପଳୀ, ମୁଥା, ଯାଷ୍ଟିମଧୁ, ମୁଗାମୂଳ, ବ୍ରହ୍ମଣଯଷ୍ଠି, ମୋଚରସ, ବଂଶଲୋଚନା, ଯବକ୍ଷାର, ଅତୁଶୀ, ବାସଙ୍ଗ ଛେଲି, ଗୋଖର, ବୃହତୀ, ଓ କଣ୍ଟକାରୀ ପ୍ରତ୍ୟେକର ସମଭାଗ ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ଜଳ ସହିତ ଦୁଇଅଣା ପରିମାଣରେ ସେବନ କଲେ ମସୁରିକା, ଶ୍ଲେଷ୍ମାନ୍ତ, ବସ୍ତେ ଟେକ ଓ ଜ୍ୱର ନିବାରିତ ହୁଏ ।



୧୩—ସୈନ୍ଧବାଦ୍ୟ ଚୂର୍ଣ୍ଣ ( ଅଗ୍ନିମାନ୍ଦ୍ୟ ଓ ଅଜୀର୍ଣ୍ଣରେ )

ସୈନ୍ଧବ ଲବଣ, ହରିଡ଼ା, ପିପ୍‌ପଳୀ ଓ ଚିତାମୂଳ, ଏହାର ଚୂର୍ଣ୍ଣ ସମଭାଗରେ ମିଶ୍ରିତ କରି ଉଷ୍ଣଜଳ ସହିତ ସେବନ କରିଲେ ଅଗ୍ନିମାନ୍ଦ୍ୟ ବା ଅଗ୍ନିର ଅତିଶୟ ଦୀପ୍ତି ହୁଏ ଏବଂ ଭକ୍ଷିତ ନୂତନ ଚାଉଳର ଅନ୍ନ ଓ ଘୃତ ପକ୍ୱ ମତ୍ସ୍ୟ ପର୍ଯ୍ୟନ୍ତ ଏହା ଦ୍ୱାରା କ୍ଷଣକ ମଧ୍ୟେ ଭସ୍ମୀଭୂତ ହୋଇଯାଏ ।



୧୪—ପଞ୍ଚଜମ୍ବ୍ୱାଦ୍ୟ ଚୂର୍ଣ୍ଣ ( ଅମ୍ଳପିତ୍ତରେ )

ଜାମ୍ବୁର ଛେଲି, ପତ୍ର, ପୁଷ୍ପ, ମୂଳ ଓ ଫଳ, ଏହି ସମସ୍ତ ଏକତ୍ରରେ ଏକଭାଗ, ବୃଦ୍ଧଦାରକ ( ବୃଦ୍ଧତାରକ ) ଦୁଇ ଭାଗ, ଯବକ୍ଷାର ୧୦ ଭାଗ, ଏ ସମୁଦାୟ ସହିତରେ ଚିନି ଓ ମଧୁମିଶ୍ରିତ କରିବ । ମାତ୍ରା ୨ ତୋଳା । ଅନୁପାନ ମଧୁ ଓ ଶୀତଳ ଜଳ । ଏହାକୁ ସେବନ କଲେ ଅମ୍ଳପିତ୍ତ ଓ ପିତ୍ତ ଶ୍ଳେଷ୍ମିକ ଶୂଳ ନିବାରିତ ହୁଏ ।



୧୫—ପୁନର୍ନବାଦ୍ୟ ଚୂର୍ଣ୍ଣ ( ଆମବାତରେ )

ପୁନର୍ନବା, ସଞ୍ଜୁ, ଶୁଣ୍ଠୀ, ବୃଦ୍ଧଦାରକ, ଗନ୍ଧଶୁଣ୍ଠୀ ଓ ମୁଣ୍ଡି ଏହାର ଚୂର୍ଣ୍ଣ ସମଭାଗରେ ମିଶ୍ରିତ କରି ଉପଯୁକ୍ତ ମାତ୍ରାରେ କାଞ୍ଜି ବା ଉଷ୍ଣଜଳ ସହିତ ପାନ କଲେ ଆମବାତ ଓ ଉଦ୍ଧୃତ ଗୃଧ୍ରସୀ ରୋଗ ଉପଶମିତ ହୁଏ ।



୧୬—ସ୍ୱଳ୍ପ ଗଙ୍ଗାଧର ଚୂର୍ଣ୍ଣ [ ଗ୍ରହଣୀରେ ]

ମୁଥା, ସୈନ୍ଧବ ଲବଣ, ଶୁଣ୍ଠୀ, ଧାତକୀ ଫୁଲ, ଲୋଧ୍ର, ପିତା କୋରୁଆଁ ଛେଲି, ବେଲଶୁଣ୍ଠା, ଶିମିଳି ଅଠା, ଅକାନବିନ୍ଧ, ଇନ୍ଦ୍ରଯବ, କୁବେଲ, ଅମ୍ବକଷି, ଅତୋଷୀ ଓ ବରହକାନ୍ତା, ଏହିସବୁ ଦ୍ରବ୍ୟ ସମଭାଗରେ ଚୂର୍ଣ୍ଣ କରି ମଧୁ ଓ ଚାଉଳଧୁଆ

ପାଣି ସହିତ ସେବ୍ୟ । ଏହାଦ୍ୱାରା ସର୍ବପ୍ରକାର ଅତିସାର, ଶୂଳ, ସଗ୍ରହ ଗ୍ରହଣୀ ଓ ସୂତିକା ରୋଗ ନିବାରିତ ହୁଏ ।



## ୨୭—ବୃହତ୍ ନାୟିକା ଚୂର୍ଣ୍ଣ ( ଗ୍ରହଣୀରେ )

ଚିତାମୂଳ, ତ୍ରିଫଳା, ତ୍ରିକଟୁ, ବିଡ଼ଙ୍ଗ, ହଳଦୀ, ଦାରୁ ହଳଦୀ, ଭାଲିଆ ମୁଣ୍ଡି, ଯୁଆଣୀ, ହିଙ୍ଗୁ, ପଞ୍ଚଲବଣ, ଗୃହଧୂମ [ ଅଳନ୍ଧୁ ] ବଚ, କୁଡ଼, ମୁଥା, ଅଭ୍ର, ପାରଦ, ଗନ୍ଧକ, ଯବକ୍ଷାର, ସାଜୀକ୍ଷାର, ଟାଙ୍କଣା, ବଣଯୁଆଣୀ ଓ ଗଜପିପ୍ପଳୀ, କେହି ଏହା ସଙ୍ଗେ ଇନ୍ଦ୍ରଯବ ଅଜୋଖୀ ଧନିଆଁ ଗୁଳିକା ଜାଇଫଳ ଏହି ପାଞ୍ଚଟି ପଦାର୍ଥ ଅଧିକ ସଂଯୋଗ କରନ୍ତି ସମୁଦାୟ ଦ୍ରବ୍ୟ ସମ-ଭାଗରେ ଏବଂ ସର୍ବସମଷ୍ଟିର ସମାନ ସିଦ୍ଧି ଚୂର୍ଣ୍ଣ (ପତ୍ର) ଏକତ୍ର ମିଶ୍ରିତ କରି ଉପଯୁକ୍ତ ମାତ୍ରାରେ ସେବନକଲେ ଅତିସାର ଗ୍ରହଣୀ ସଗ୍ରହ ଗ୍ରହଣୀ ଶୋଥ ଅଗ୍ନି ମାନ୍ଦ୍ୟ ଶୂଳ ବିଷ୍ଟମ୍ଭ ସୂତିକା ଜୀର୍ଣ୍ଣଜ୍ୱର କାସ ଆମବାତ ଏବଂ ବାତ ପିତ୍ତ କଫଜନିତ ଅନ୍ୟାନ୍ୟ ବିବିଧ ରୋଗ ପ୍ରଶମିତ ହୁଏ ।



## ୨୮—ତ୍ରିଫଳା ଚୂର୍ଣ୍ଣ ( ପ୍ରମେହରେ

୧ ଗୋଟି ହରିଡ଼ା, ୨ଗୋଟି ବାହାଡ଼ା, ଓ ୪ଗୋଟି ଅଁଳା ଏହାର ମଞ୍ଜୀ କାଢ଼ି ଚୂର୍ଣ୍ଣକରିନେବ ତ୍ରିଫଳା ଚୂର୍ଣ୍ଣପ୍ରସ୍ତୁତହେଲେ ଏହା ଅଗ୍ନିର ଦୀପ୍ତିକାରିଣୀ ପିତ୍ତ, ଶ୍ଳେଷ୍ମନାଶିନୀ, କୁଷ୍ଠ ହନ୍ତା ରସାୟନୀ । ଏହା ଘୃତ ଓ ମଧୁ ସଂଯୋଗରେ ସେବନକଲେ ନେତ୍ର ରୋଗ ଓ ପ୍ରମେହ ଯାଏ ।



## ୨୯—ଧାତୁକ୍ୟାଦି ଚୂର୍ଣ୍ଣ ( ବାଳ ରୋଗରେ )

ଧାତୁକୀ ଫୁଲ, ବେଲଶୁଣ୍ଠା, ଧନିଆଁ, ଲୋଧ ଇନ୍ଦ୍ରଯବ ଓ କୁଦେଲ ପ୍ରତ୍ୟେକ ସମାନ ଭାଗରେ ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି

ମଧୁ ସହିତରେ ଦୁଇରତି ପ୍ରମାଣେ ସେବନ କରାଇଲେ ଜ୍ୱରାତି-ସାର ଓ ବମନ ନିବାରିତ ହୁଏ ।



୩୦—ନାରସିଂହ ଚୂର୍ଣ୍ଣ [ ଶୁକ୍ରତାରଲ୍ୟରେ ]

ଶତମୂଳୀ ଚୂର୍ଣ୍ଣ ଦୁଇସେର, ଗୋଖରା ମଞ୍ଜି ଦୁଇସେର, ବାରାହି କନ୍ଦ ଅଢେଇ ସେର, ଗୁଳୁଚି ତିନିସେର ଦୁଇ ଛଟାଙ୍କି, ଭାଲିଆ ଚୂର୍ଣ୍ଣ ଷୋହଳସେର, ଚିତାମୂଳ ଚୂର୍ଣ୍ଣ ପାଞ୍ଚ ପା, ତିଳ ଚାଉଳ ଦୁଇସେର, ତ୍ରିକଟୁ ଚୂର୍ଣ୍ଣ ମିଶ୍ରିତ ଏକସେର, ଚିନି ଆଠସେର, ତିନିପା ମଧୁ, ଚାରିସେର ଛ ଛଟାଙ୍କି ଘିଅ, ଦୁଇସେର ତିନି ଛଟାଙ୍କି ଏବଂ ଭୂଇଁକଖାରୁ ଚୂର୍ଣ୍ଣ ଦୁଇସେର ଏକତ୍ରିତ କରି ଘୃତ ଭାଣ୍ଡରେ ରଖିବ । ଏହା ଦୁଇତୋଳା ପର୍ଯ୍ୟନ୍ତ ଏକମାସ କାଳ ସେବନ କଲେ ୧୮ ପ୍ରକାର କୁଷ୍ଠ ୮ ପ୍ରକାର ଜ୍ୱର ରୋଗ ଭଗନ୍ଦର ମୂତ୍ରକୃଚ୍ଛ୍ର ଗୃଧ୍ରସୀ ହଳିମକ କ୍ଷୟ ପାଞ୍ଚ ପ୍ରକାର କାସ ଅଶୀ ପ୍ରକାର ବାତଜ ବ୍ୟାଧି ଚାଳିଶ ପ୍ରକାର ପିତ୍ତଜ ବ୍ୟାଧି ବିଂଶତି ପ୍ରକାର ଶ୍ଳେଷ୍ମଜ ବ୍ୟାଧି ସନ୍ନିପାତଜ ବ୍ୟାଧି ଓ ଅର୍ଶ ପ୍ରଭୃତି ବହୁପ୍ରକାର ରୋଗ ବିନଷ୍ଟ ହୁଏ ଏବଂ ଏହାଦ୍ୱାରା ବଳିପଳିତ ଓ ଖ୍ୟାଳିତ୍ୟାଦି ରୋଗ ଉପଶମ ହୁଏ ବଳବୀର୍ଯ୍ୟ ଓ ଇନ୍ଦ୍ରିୟଶକ୍ତି ପରିବର୍ଦ୍ଧିତ ହୁଏ ।



୩୧—ବଡ଼ବାନଳ ଚୂର୍ଣ୍ଣ ( ଅଗ୍ନି ମାନ୍ଦ୍ୟରେ )

ସୈନ୍ଧବ ଲବଣ ଏକଭାଗ, ପିପ୍‌ପଳୀ ମୂଳ ଦୁଇଭାଗ, ପିପ୍‌ପଳୀ ତିନିଭାଗ, ରୁଇଁକାଠ ଚାରିଭାଗ, ଚିତାମୂଳ ପାଞ୍ଚଭାଗ, ଶୁଣ୍ଠିଛଭାଗ, ଓ ହରିଡ଼ା ସାତଭାଗ, ଏହାର ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ସେବନ କଲେ ଅଗ୍ନିର ଦୀପ୍ତି ହୁଏ । ମାତ୍ରା ଏକଅଣାଠାରୁ ଚାରିଅଣା ପର୍ଯ୍ୟନ୍ତ, ଅନୁପାନ ଉଷ୍ଣ ଜଳ ।



୩୨—ସାରସ୍ୱତ ଚୂର୍ଣ୍ଣ ( ଉନ୍ମାଦରେ )

କୁଡ଼, ଅଶ୍ୱଗନ୍ଧା, ସୈନ୍ଧବ, ଯୁଆଣୀ, ବଣ ଯୁଆଣୀ, ଜୀର, କୃଷ୍ଣଜୀର, ତ୍ରିକଟୁ, ଅକାନବନ୍ଧ ଓ ଶଙ୍ଖପୁଷ୍ପି, ପ୍ରତ୍ୟେକ ଦ୍ରବ୍ୟ ସମଭାଗରେ ଏବଂ ସକଳ ସମାନ ବଚ ଚୂର୍ଣ୍ଣ ଏହି ସମସ୍ତ ଦ୍ରବ୍ୟ ବ୍ରହ୍ମି ଶାକର ରସରେ ତିନିଥର ଭାବନା ଦେଇ ଶୁଷ୍କ ହେଲେ ପୁନର୍ବାର ଚୂର୍ଣ୍ଣ କରିନେବ । ଉପଯୁକ୍ତ ମାତ୍ରାରେ ଘିଅ ଓ ମଧୁ ଅନୁପାନ ସହିତ ଏହା ପ୍ରୟୋଗ କଲେ ଏହାଦ୍ୱାରା ଉନ୍ମାଦ ରୋଗର ଉପଶମ ହୁଏ ଏବଂ ବୁଦ୍ଧି ମେଧା, ସ୍ମୃତିଶକ୍ତି ଓ କବିତ୍ୱ ପ୍ରଭୃତିର ଉତ୍ତରୋତ୍ତର ବୃଦ୍ଧି ହୋଇଥାଏ ।



୩୩—ହିଙ୍ଗ୍ୱାଦି ଚୂର୍ଣ୍ଣ ( ଗୁଳ୍ମ ରୋଗେ )

ହିଙ୍ଗୁ ଏକ ଭାଗ, ବଚ ଦୁଇଭାଗ, ବିଟଲବଣ ତିନିଭାଗ, ଶୁଣ୍ଠି ଚାରିଭାଗ, ଜୀର ପାଞ୍ଚଭାଗ, ହରିଡ଼ା ଛଅଭାଗ, ପୁଷ୍କର ମୂଳ ସାତ-ଭାଗ ଓ କୁଡ଼ ଆଠଭାଗ, ଏକତ୍ର ମିଶ୍ରିତ କରି ଚାରିଅଣା ପର୍ଯ୍ୟନ୍ତ ମାତ୍ରାରେ ଉଷ୍ଣଜଳ ସହିତ ସେବନ କରିବ । ଏହାଦ୍ୱାରା ଗୁଳ୍ମ, ଉଦରାଜୀର୍ଣ୍ଣ ଓ ବିସୂଚିକା ନିବାରିତ ହୁଏ ।



୩୪—ପୁଷ୍ୟାନୁଗ ଚୂର୍ଣ୍ଣ (ପ୍ରଦର ରୋଗେ)

ଅକାନବନ୍ଧ ମୂଳ, ଜାମୁ ମଞ୍ଜିର ଶସ, ଆମ୍ବ ଟାକୋଇଲି, ପାଷାଣଭେଦୀ, ରସାଞ୍ଜନ, ଲଜ୍ଜାଳୁ ( ଏହା ଅଭାବେ ଅକାନବନ୍ଧ ଗ୍ରହଣ କରିବ) ମୋଚରସ, ବରାହକ୍ରାନ୍ତା, ପଦ୍ମକେଶର, କୁଙ୍କୁମ, ଅତୋଷୀ, ମୁଥା, ବେଲଶୁଣ୍ଠା, ଲୋଧ, ଗେରୁମାଟି, ତ୍ରିଫଳା, ମରିଚ, ଶୁଣ୍ଠୀ, ଦ୍ରାକ୍ଷା, ରକ୍ତଚନ୍ଦନ, ଫଣଫଣା ଛେଲି, ପିତାକୋରୁଅ ଛେଲି, ଚେମଡ଼ନାଇ ମୂଳ, ଧାତୁକୀଫୁଲ, ଯଷ୍ଟିମଧୁ ଓ ଅର୍ଜ୍ଜୁନ ଛେଲି, ଏହି ସମୁଦାୟ ଦ୍ରବ୍ୟକୁ ପୁଷ୍ୟା ନକ୍ଷତ୍ରରେ ସଂଗ୍ରହ କରି ସମାନ ଭାଗରେ ଚୂର୍ଣ୍ଣ ମିଶ୍ରିତ କରିବ । ମାତ୍ରା ଯଥୋପଯୁକ୍ତ

[ ୧ମଷାଠାରୁ ୨ମଷା ପର୍ଯ୍ୟନ୍ତ ] ଅନୁପାନ ମଧୁ ଓ ଗୁଡ଼ୁଲଧୂଆ ପାଣି । ଏଥିରେ ଅତିସାର, ଯୋନିଦୋଷ ଓ ରକ୍ତଦୋଷ ପ୍ରଶମିତ ହୁଏ ।



### ୩୫—ଚନ୍ଦନାଦ୍ୟ ଚୂର୍ଣ୍ଣ (ସ୍ତ୍ରୀ ରୋଗରେ)

ରକ୍ତଚନ୍ଦନ ଜଟାମାଂସୀ, ଲୋଧ, ବେଣାଚେର,ପଦ୍ମକେଶର ନାଗେଶ୍ୱର, ବେଲଶୁଣ୍ଠା, ନାଗରମୁଥା, ଚିନି, କୁରୁବେଲ, ଅକାନବିନ୍ଧ, ଇନ୍ଦ୍ରଜବ, ପିତାକୋରୁଆଁ ଛେଲ, ଶୁଣ୍ଠୀ ଅତୋଷୀ, ଧାତୁକୀଫୁଲ, ରସାଞ୍ଜନ, ଜାମୁମଞ୍ଜୀ, ଶିମୁଳୀଅଠା, ନୀଳୋତ୍ପଳ, ଆମ୍ବକଷି, ବରାହକାନ୍ତା, ଗୁଡ଼ୁଚି ଓ ଡ଼ାଳିମ୍ବଛେଲ, ଏଥିରୁ ପ୍ରତ୍ୟେକରୁ ସମଭାଗ ଚୂର୍ଣ୍ଣ ଏକଠି କରି ଅଧତୋଳା ମାତ୍ରାରେ, ମଧୁ ଓ ଅରୁଆଚାଉଳଧୂଆ ଜଳ, ସହିତ ସେବନ କଲେ ସର୍ବ-ପ୍ରକାର ପ୍ରଦର,ରକ୍ତାତିସାର, ରକ୍ତାର୍ଶ ଓ ରକ୍ତପିତ୍ତ ପ୍ରଶମିତହୁଏ ।

### ୩୬—ସମଶର୍କରା ଚୂର୍ଣ୍ଣ ( ଅର୍ଶରେ )

ଅଳାଇଚ ଏକଭାଗ, ଡ଼ାଲଚିନି ଦୁଇଭାଗ,ତେଜପତ୍ର ତିନି-ଭାଗ,ନାଗେଶ୍ୱର ଚାରିଭାଗ, ମରିଚ ପାଞ୍ଚଭାଗ, ପିପ୍ପଳୀ ଛଅଭାଗ ଓ ଶୁଣ୍ଠୀ ସାତଭାଗ ଏକତ୍ରେ ଏହାର ଚୂର୍ଣ୍ଣ କରି ତହିଁରେ ସର୍ବ-ସମଷ୍ଟିର ସମାନ ଚିନି ମିଶ୍ରିତ କରିବ । ଏହି ଚୂର୍ଣ୍ଣ ଚାରିଅଣା ମାତ୍ରାରେ ଅଥବା ଅବସ୍ଥା ବିଶେଷରେ ତାହା ଅପେକ୍ଷା ଅଳ୍ପାଧିକ ମାତ୍ରାରେ ଜଳସହ ପ୍ରଯୋଜ୍ୟ । ଏଥିରେ ଅର୍ଶ ଅଗ୍ନିମାନ୍ଦ୍ୟ, ଅରୁଚି, ହୃଦ୍‌ରୋଗ, କଣ୍ଠରୋଗ ଏବଂ ଶ୍ୱାସ କାଶ ପ୍ରଭୃତିରେ ଏହା ବିଶେଷ ଉପକାରକ ।



### ୩୭—ତାଳିଶାଦ୍ୟ ଚୂର୍ଣ୍ଣ ( କାଶ ରୋଗରେ )

ତାଳିଶ ପତ୍ର ୧ ତୋଳା, ମରିଚ ୨ତୋଳା, ଶୁଣ୍ଠୀ ୩ତୋଳା, ପିପ୍ପଳୀ ୪ତୋଳା,ବଂଶଲୋଚନା ୫ ତୋଳା, ଗୁଡ଼ତ୍ୱକ ଅଧ-

ତୋଳା, ଅଳାଇଚ ଅଧତୋଳା ଓ କଦ ଅଧସେର ଏକତ୍ରରେ ମର୍ଦ୍ଦନ କରି ଉପଯୁକ୍ତ ମାତ୍ରାରେ ବ୍ୟବହାର କରିବ । ଏହାର ନାମ ତାଳିଶାଦ୍ୟ ଚୂର୍ଣ୍ଣ ଏହି ଔଷଧକୁ ସେବନ କଲେ କାସ, ଶ୍ୱାସ, ଅରୁଚି, ପାଣ୍ଡୁ, ଗ୍ରହଣୀ ପ୍ଳୀହା, ଶୋଥ, ଅତିସାର, ବାନ୍ତି ଓ ଶୂଳ ପ୍ରଭୃତି ନାନା ରୋଗ ବିନଷ୍ଟ ହୁଏ ।



୩୮—ତ୍ରିକଟ୍ୱାଦି ଚୂର୍ଣ୍ଣ ( ରାଜଯକ୍ଷ୍ମାରେ )

ତ୍ରିକଟୁ, ତ୍ରିଫଳା, ଅଳାଇଚ, ଜାଇଫଳ ଓ ଲବଙ୍ଗ ପ୍ରତ୍ୟେକ ଦ୍ରବ୍ୟ ୧ ଭାଗ ଏବଂ ତତ୍ ସମୁଦାୟ ସମାନ ଅର୍ଥାତ୍ ୯ ଭାଗ, ଲୌହ ଭସ୍ମ ଏକତ୍ର ମିଶ୍ରିତ କରି ଏହା ଉପଯୁକ୍ତ ପରିମାଣରେ ମଧୁ ସହିତ ସେବନ କଲେ ଶ୍ୱାସ, କାସ, କ୍ଷୟ, ଯକ୍ଷ୍ମା, ମେହ, ପାଣ୍ଡୁ, ଜ୍ୱର, ଅଗ୍ନିମାନ୍ଦ୍ୟ, ଶୋଥ, ଓ ଗ୍ରହଣୀ ପ୍ରଭୃତି ପୀଡ଼ା ଉପଶମ ହୁଏ ।



୩୯—ପାଠାଦ୍ୟ ଚୂର୍ଣ୍ଣ ( ଗ୍ରହଣୀରେ )

ଅକାନବିନ୍ଧ, ବେଲଶୁଣ୍ଠା, ଚିତାମୂଳ, ତ୍ରିକଟୁ, ଜାମୁଚଛଲି, ଡ଼ାଳିମ୍ବଫଳ, ଧାତୁକୀ ଫୁଲ, କଟେଙ୍କୀ, ଅତୋଷୀ, ମୁଥା, ଇନ୍ଦ୍ରଯବ, ବାରୁହଳଦୀ ଓ ଚିରାଇତା ଏଥିରୁ ପ୍ରତ୍ୟେକରୁ ଚୂର୍ଣ୍ଣ ସମଭାଗ ଏବଂ ପିତାକୋରୁଆଁ ମୂଳର ଛେଲି ଚୂର୍ଣ୍ଣ ସର୍ବସମାନ । ଏହି ସମୁଦାୟ ଏକତ୍ର ମିଶ୍ରିତ କରି ଚାଉଳ ଧୁଆ ପାଣି ଓ ମଧୁ ସହିତ ସେବନ କଲେ ଜ୍ୱରାତିସାର, ଶୂଳ ହୃଦ୍‌ରୋଗ, ଗ୍ରହଣୀ, ଅରୋଚକ ଓ ଅଗ୍ନିମାନ୍ଦ୍ୟ, ବିନଷ୍ଟ ହୁଏ ।



୪୦—ରବ୍ୟାଦି ଚୂର୍ଣ୍ଣ [ ସ୍ୱରଭଙ୍ଗରେ ]

ପୁରାତନ ଗୁଡ଼ର ସହିତ ଗୁଳି କାଠ, ଅମ୍ଳବେତସ, ତ୍ରିକଟୁ, ତେନ୍ତୁଳି, ତାଳିଶପତ୍ର, ଜୀରା, ବଂଶଲୋଚନା, ଚିତାମୂଳ, ଡ଼ାଳଚିନି, ତେଜପତ୍ର ଓ ଅଳାଇଚ ଏହି ସମୁଦାୟ ଦ୍ରବ୍ୟ ସମଭାଗରେ

ମିଶ୍ରିତ କରି ଉପଯୁକ୍ତ ମାତ୍ରାରେ ସେବନ କଲେ ସ୍ୱରଭଙ୍ଗ, ପୀନସ ଓ ଶ୍ଳେଷ୍ମାଙ୍କ ଅରୁଚି ନଷ୍ଟ ହୁଏ ।



୪୧--ହିଙ୍ଗ୍ୱାଦ୍ୟ ଚୂର୍ଣ୍ଣ ( ଆମ ବାତରେ )

ହିଙ୍ଗୁ ଏକଭାଗ, ଗୁଳୁଚି ଦୁଇଭାଗ, ବିଟଲବଣ ତିନିଭାଗ, ଶୁଣ୍ଠୀ ଚାରିଭାଗ, ପିପ୍ପଳୀ ପାଞ୍ଚଭାଗ, ଜୀର ଛଭାଗ ଓ କୁଡ ସାତଭାଗ ଏକତ୍ର ମିଶ୍ରିତ କରିବ । ଚାରିଅଣା ପର୍ଯ୍ୟନ୍ତ ମାତ୍ରାକୁ ଅନୁପାନ ଉଷ୍ଣଜଳ ବା ଅଜମୋଦାଦି ଚୂର୍ଣ୍ଣ ଓ ଅଲମ୍ବୁଷାଦ୍ୟ-ଚୂର୍ଣ୍ଣର ଅନୁପାନ ସହିତ ପ୍ରୟୋଗ କରିବ । ଏହାଦ୍ୱାରା ଆମବାତ ବିନଷ୍ଟ ହୁଏ



୪୨--ଲବଙ୍ଗାଦି ଚୂର୍ଣ୍ଣ ( ଗର୍ଭିଣୀ ରୋଗେ )

ଲବଙ୍ଗ, ଠାଙ୍କଣ, ମୁଥା, ଧାତୁକୀ ଫୁଲ, ବେଲଶୁଣ୍ଠା, ଧନିଆ, ଜାଇଫଳ, ଶ୍ୱେତ ଝୁଣା, ଶୋପ, ଡାଳିମ୍ବଫଳ ଛେଲି, ଜୀର, ଶ୍ୱେତଜିରା, ଶିମିଳ ଅଠା, ନୀଳକଣ୍ଠ ମୂଳ, ରସାଞ୍ଜନ, ଅଭ୍ର, ବଙ୍ଗ, ବରାହକାନ୍ତା, ରକ୍ତଚନ୍ଦନ, ଶୁଣ୍ଠୀ, ଅତୋଷୀ, କାକଡ଼ାଶୃଙ୍ଗୀ, ଖଇର ଓ କୁବେଲ, ଭୃଙ୍ଗରାଜ (କେଶଦୁଦୁରା) ରସରେ ଭାବନା ଦେଇ ପ୍ରତ୍ୟେକର ସମଭାଗ ଚୂର୍ଣ୍ଣ ଏକତ୍ର କରି ପାଞ୍ଚରତିଠାରୁ ଚାରିଅଣା ପର୍ଯ୍ୟନ୍ତରେ ମାତ୍ରା କରି ଛେଳି ଦୁଧର ସହିତ ସେବନ କଲେ ସଂଗ୍ରହ ଗ୍ରହଣୀ ଅତିସାର ଆମରକ୍ତ ଗୁଳ୍ମ ଶୋଥ ଓ ଜ୍ୱର ପ୍ରଶମିତ ହୁଏ ।



୪୩—ବୃଦ୍ଧଦାରକାଦି ଚୂର୍ଣ୍ଣ ( ଶୀପଦରେ )

ତ୍ରିକଟୁ, ତ୍ରିଫଳା, ଗୁଳୁଚି, ଦାରୁହଳଦୀ, ବରୁଣଛେଲି, ଗୋଖରୁ, ମୁଣ୍ଡିକାଛେଲି ଓ ଚିତ୍ରକ, ପ୍ରତ୍ୟେକର ଚୂର୍ଣ୍ଣ ସମଭାଗ ବୃଦ୍ଧଦାରକ ଚୂର୍ଣ୍ଣ ଏସମସ୍ତ ଚୂର୍ଣ୍ଣର ସମାନ । ସମୁଦାୟକୁ ଏକ-

ସରେ ମିଶାଇ ଅର୍ଦ୍ଧତୋଳା ମାତ୍ରାରେ କାଞ୍ଜୀ ସହିତରେ ସେବନ କଲେ ଶ୍ଳୀପଦ ଓ ଆମବାତ ପ୍ରଭୃତି ବିନଷ୍ଟ ହୁଏ ।



୪୪—ସ୍ୱର୍ଣ୍ଣମାକ୍ଷିକାଦି ଚୂର୍ଣ୍ଣ ( ରାଜଯକ୍ଷ୍ମାରେ )

ସ୍ୱର୍ଣ୍ଣମାକ୍ଷିକ, ଲୌହଭସ୍ମ, ଶିଳାଜତୁ ଓ ବିଡ଼ଙ୍ଗ ଏଥିର ପ୍ରତ୍ୟେକ ଦ୍ରବ୍ୟ ସମାନ ଭାଗ ଏକତ୍ର ମିଶ୍ରିତ କରିବ। ଏହା ଉପଯୁକ୍ତ ପରିମାଣରେ ଘିଅ ଓ ମଧୁ ସହିତ ମିଶ୍ରିତ କରି ସେବନ କଲେ ପ୍ରବଳ ଯକ୍ଷ୍ମା ରୋଗ ଉପଶମ ହୁଏ ।



୪୫—ଅଭ୍ରବ୍ୟାଚୂର୍ଣ୍ଣ ( ଆମବାତରେ )

ବରୁଣମୂଳ ଛେଲି, ରାସ୍ନା, ଶତମୂଳୀ, ଶୁଣ୍ଠି, ଶଟୀ, ଅଶ୍ୱଗନ୍ଧା, ହବୁଷା, ବୃଦ୍ଧ ଦାରୁକ, ଯୁଆଣୀ ଓ ବଣଯୁଆଣୀ ପ୍ରତ୍ୟେକ ଦ୍ରବ୍ୟ ସମ ପରିମାଣରେ ନେଇ ସୂକ୍ଷ୍ମଚୂର୍ଣ୍ଣ କରିବ । ପରେ ମଦ୍ୟ, ମାଂସ ରସ ଯୁଷ, ତକ୍ର, ଉଷ୍ଣଜଳ, ଘୃତ ବା ଦହିପାଣି ସହିତ ଏହି ଚୂର୍ଣ୍ଣ ଅଧତୋଳା ପରିମାଣରେ ସେବନକଲେ ଅସ୍ଥିଗତ ସନ୍ଧିଗତ, ସ୍ନାୟୁଗତ ଓ ମଜ୍ଜାଶ୍ରିତ ବାୟୁ ଏବଂ କଟିଗ୍ରହ, ଗୃଧ୍ରସୀ ମନ୍ୟାସ୍ତମ୍ଭ, ହନୁଗ୍ରହ ଓ କୋଷ୍ଠାଶ୍ରିତ ସକଳ ପ୍ରକାର ରୋଗ ପ୍ରଶମିତ ହୁଏ ।



୪୬--ସମସର୍କରା ଚୂର୍ଣ୍ଣ (କାଶ ରୋଗରେ )

ଲବଙ୍ଗ ଦୁଇତୋଳା, ଜାଇଫଳ ଦୁଇତୋଳା, ପିପ୍ପଳୀ ଦୁଇ ତୋଳା, ମରିଚ ଚାରିତୋଳା ଓ ଶୁଣ୍ଠୀ ଚାରିତୋଳା ଏହା ଚୂର୍ଣ୍ଣ କରି ଏବଂ ସେହି ଚୂର୍ଣ୍ଣ ସମଷ୍ଟିର ସମାନ ଚିନି ଏକତ୍ର ମିଶ୍ରିତ କରିନେବ । ଏହା ସେବନ କରିଲେ କାଶ, ଜ୍ୱର, ଅରୁଚି, ମେହ, ଗୁଳ୍ମ, ଶ୍ୱାସ, ଅଗ୍ନିମାନ୍ଦ୍ୟ ଓ ଗ୍ରହଣୀ ପ୍ରଭୃତି ନାନାବିଧ ରୋଗ ନଷ୍ଟ ହୁଏ ।



୪୭--ସ୍ୱଳ୍ପନାୟିକା ଚୂର୍ଣ୍ଣ (ଗ୍ରହଣୀରେ)

ପଞ୍ଚ ଲବଣ ପ୍ରତ୍ୟେକ ବେଢ଼ତୋଳା, ତ୍ରିକଟୁ, ପ୍ରତ୍ୟେକ ଦୁଇତୋଳା, ଗନ୍ଧକ ଏକତୋଳା, ପାରଦ ଅଧତୋଳା ଏବଂ ସିଦ୍ଧିପତ୍ର [ପତ୍ର] ସାଢ଼େ ନଅତୋଳା ଉତ୍ତମରୂପେ ଚୂର୍ଣ୍ଣିତ ଓ ଏକତ୍ର ମିଶ୍ରିତ କରିନେବେ। ମାତ୍ରା ଏକମଷାରୁ ଆରମ୍ଭ କରି କ୍ରମଶଃ ଅଧତୋଳା ପର୍ଯ୍ୟନ୍ତ ବୃଦ୍ଧି କରିବା ଆବଶ୍ୟକ। ଏହା ଅତ୍ୟନ୍ତ ଅଗ୍ନିବର୍ଦ୍ଧକ ଓ ଗ୍ରହଣୀ ରୋଗ ନାଶକ।



୪୮—ଶୋଥାରିଚୂର୍ଣ୍ଣ [ଶୋଥ ରୋଗରେ]

ଶୁଣ୍ଠମୂଳ, ଅପାମାରଙ୍ଗ, ତ୍ରିକଟୁ, ତ୍ରିଫଳା, ଦନ୍ତୀମୂଳ, ଚବ୍ୟଙ୍ଗ, ଚିତାମୂଳ ଓ ମୁଥା ପ୍ରତ୍ୟେକ ଦ୍ରବ୍ୟ ସମଭାଗରେ ଗ୍ରହି-ଅଣା ମାତ୍ରାରେ ବେଲପତ୍ର ରସ ସହିତ ସେବନ କଲେ ଶୋଥ, ଓ ପାଣ୍ଡୁ ରୋଗ ପ୍ରଶମିତ ହୁଏ।



୪୯—ସାମୁଦ୍ରାଦ୍ୟ ଚୂର୍ଣ୍ଣ ( ଜ୍ୱର ରୋଗେ )

କର୍କଚ, ସଚଳ ଓ ସୈନ୍ଧବ ଲବଣ, ଯବକ୍ଷାର, ଯୁଆଣୀ, ବଣ ଯୁଆଣୀ, ପିପ୍‌ପଳୀ, ଚିତାମୂଳ, ଶୁଣ୍ଠୀ, ହିଙ୍ଗୁ ଓ ବିଟ ଲବଣ ପ୍ରତ୍ୟେକ ଦ୍ରବ୍ୟ ସମ ପରିମାଣରେ ନେଇ ତାହା ସହିତ ଘୃତ ମିଶ୍ରିତ କରି ଗ୍ରହିଅଣା ମାତ୍ରାରେ ଆହାରର ପ୍ରଥମଗ୍ରାସରେ ସେବନ କରିବ। ଏଥିରେ ବାତଜ୍ୱର, ଗୁଳ୍ମ, ଅଜୀର୍ଣ୍ଣ, ଅର୍ଶ ପାଣ୍ଡୁ ଓ ଗ୍ରହଣୀ ପ୍ରଭୃତି ପ୍ରଶମିତ ହୁଏ।



୫୦--ଚନ୍ଦନାଦ୍ୟ ଚୂର୍ଣ୍ଣ [ପ୍ରମେହରେ]

ଶ୍ୱେତଚନ୍ଦନ, ଶିମୁଳୀଫୁଲ ଡ଼ାଲଚିନି, ତେଜପତ୍ର, ଅଳାଇଚ, ମୁଥା, ବେଣାଚେର, ଯାଷ୍ଟିମଧୁ, ଅଁଳା, ସୁନାମକାଇ, ହଳଦୀ ଦାରୁ ହଳଦୀ, ଅନନ୍ତମୂଳ, ଶୁଆଁଲଇ, ବଂଶଲୋଚନା, ତ୍ରିଷ୍ଣଣ-

ଜଠା, ବେବବାରୁ ଓ ହରିଡ଼ା ପ୍ରତ୍ୟେକ ଦ୍ରବ୍ୟ ସମଭାଗ ଏବଂ ଏହି ସକଳଙ୍କର ଦୁଇଗୁଣ ଲୌହ ଏକତ୍ର ମର୍ଦ୍ଦନ କରିନେବ । ଏକମସା ପରିମାଣରେ ସେବନ କଲେ ସକଳ ପ୍ରକାର ପ୍ରମେହ ରୋଗ ଏବଂ ଶ୍ୱାସ, କାଶ, ଜୀର୍ଣ୍ଣ, କାମଳା ପ୍ରଭୃତି ନାନା ପ୍ରକାର ରୋଗ ଶାନ୍ତ ହୁଏ ।



୫୧--ଶୃଙ୍ଗାଦ୍ୟ ନାଦ୍ୟ ଚୂର୍ଣ୍ଣ ( ରାଜଯକ୍ଷ୍ମାରେ )

କକଡ଼ାଶୃଙ୍ଗୀ, ଅର୍ଜ୍ଜୁନଛେଲି, ଅଶ୍ୱଗନ୍ଧା, ଗୋରକ୍ଷତୁଣ୍ଡଳ, ଭୁଇଁହରିଡ଼ା, ଗୁଡୁଚି, ତାଳିଶପତ୍ର, ମରିଚ, ପିପ୍ପଳୀ, ଶୁଣ୍ଠୀ, ବଂଶଲୋଚନା, ତାଳଚନ୍ଦ୍ର, ଅଳାଇଚ ଓ ଚନ୍ଦନ ପ୍ରତ୍ୟେକଦ୍ରବ୍ୟ ସମଭାଗରେ ମିଶ୍ରିତ କରି ଏକଅଣାରୁ ଦୁଇଅଣା ପର୍ଯ୍ୟନ୍ତ ମାତ୍ରା କରିବ ଏହି ଔଷଧ ମହୁ ଓ ଘିଅ ସହିତ ଲେହନ କଲେ ଯକ୍ଷ୍ମା ରୋଗ ପ୍ରଶମିତ ହୁଏ ।



୫୨—ସ୍ୱଳ୍ପ ଲବଙ୍ଗାଦ୍ୟ ଚୂର୍ଣ୍ଣ [ ଗ୍ରହଣୀରେ ]

ଲବଙ୍ଗ, ଅତେଆଷୀ, ବେଲଶୁଣ୍ଠା, ମୁଥା, ଅକ ନବାନ୍ଧି, ଶିମଳ ଅଠା, ଜୀରା, ଧାତୁକୀ ଫୁଲ, ଲୋଧ୍ର, ଇନ୍ଦ୍ରଯବ, କୁବେଲି, ଧନିଆ, ଶ୍ୱେତ ଝୁଣା, କକଡ଼ାଶୃଙ୍ଗୀ, ପିପ୍ପଳୀ, ଶୁଣ୍ଠୀ, ବରିହଳାନ୍ତା, ଯବକ୍ଷାର, ସୈନ୍ଧବ ଲବଣ ଓ ରସାଞ୍ଜନ ଏହି ସକଳ ଦ୍ରବ୍ୟ ସମଭାଗରେ ନେଇ ଉତ୍ତମ ରୂପେ ଚୂର୍ଣ୍ଣକୁ ମିଶ୍ରିତ କରିବ । ଅନୁପାନ ମହୁ, ଚାଉଳଧୂଆ ପାଣି ବା ଛେଳି ଦୁଧ । ମାତ୍ରା ବଣ ରତିଠାରୁ କୋଡ଼ିଏ ରତି ପର୍ଯ୍ୟନ୍ତ । ଏହା ଦ୍ୱାରା ଅଗ୍ନିମାନ୍ଦ୍ୟ, ସଂଗ୍ରହ ଗ୍ରହଣୀ, ଅତିସାର, ଶୋଥ ଯୁକ୍ତ ପାଣ୍ଡୁ, କାମଳା, ଶ୍ୱାସ, କାସ, ଜ୍ୱର, ବମି, ଅମ୍ଳପିତ୍ତ ଶୂଳ ଓ ସର୍ବ ପ୍ରକାର ସନ୍ନ ପାତକ ରୋଗ ବିନଷ୍ଟ ହୁଏ ।



୫୩—ଭୃଙ୍ଗୀଗନ୍ଧ ଚୂର୍ଣ୍ଣ ( ରକ୍ତପିତ୍ତରେ )

ବେଣାମୂଳ, ତଗର ପାଦୁକା, ଶୁଣ୍ଠୀ, କାଙ୍କୋଲ, ରକ୍ତଚନ୍ଦନ, ଶ୍ୱେତ ଚନ୍ଦନ, ଲବଙ୍ଗ, ପିପ୍ପଳୀ ମୂଳ, ଗିପ୍ପଳୀ, ଅଳାଇଚ, ନାଗେଶ୍ୱର, ମୁଥା, ଯାଷ୍ଟିମଧୁ, କର୍ପୂର, ବଂଶଲୋଚନା ଓ ତେଜପତ୍ର ଏହାର ପ୍ରତ୍ୟେକର ଚୂର୍ଣ୍ଣ ସମଭାଗ, ସର୍ବ ସମଷ୍ଟିର ସମାନ କୃଷ୍ଣ ଅଗୁରୁ ଚୂର୍ଣ୍ଣ ଏବଂ ଏ ସମୁଦାୟର ଅଠଗୁଣ ଚିନି ଏକତ୍ର ମିଶ୍ରିତ କରିବ । ଉପଯୁକ୍ତ ମାତ୍ରାରେ ସେବନ କଲେ ରକ୍ତବମନ, ସନ୍ତାପ ଓ ଦାହ ନିବାରିତ ହୁଏ ।



୫୪— କଲ୍ୟାଣ ଚୂର୍ଣ୍ଣ ( ଅପସ୍ମାରରେ )

ପଞ୍ଚକୋଲ, ମରିଚ, ତ୍ରିଫଳା, ବିଟଲବଣ, ସୈନ୍ଧବ, ପିପ୍ପଳୀ, ବିଡ଼ଙ୍ଗ, ନଠା କରଞ୍ଜ, ଯୁଆଣୀ, ଧନିଆଁ ଓ ଜୀରା, ପ୍ରତ୍ୟେକ ଦ୍ରବ୍ୟ ସମଭାଗ ଏକତ୍ର ମିଶ୍ରିତ କରି ଅଧତୋଳା ମାତ୍ରାରେ ଉଷ୍ଣଜଳ ସହିତ ସେବନ କଲେ ଅପସ୍ମାର, ଉନ୍ମାଦ, ଅର୍ଶ, ଗ୍ରହଣୀ ରୋଗ ଓ ଅଗ୍ନିମାନ୍ଦ୍ୟ ନିବାରିତ ହୁଏ ।



୫୫—ଜାଇଫଳାଦି ଚୂର୍ଣ୍ଣ ( ଗ୍ରହଣୀରେ )

ଜାଇଫଳ, ବିଡ଼ଙ୍ଗ, ଚିତାମୂଳ, ତଗରପାଦୁକା, ତାଳିଶପତ୍ର, ରକ୍ତଚନ୍ଦନ, ଶୁଣ୍ଠୀ, ଲବଙ୍ଗ, କୃଷ୍ଣଜୀରା, କର୍ପୂର, ହରିଡ଼ା, ଅଁଳା, ମରିଚ, ପିପ୍ପଳୀ, ବଂଶଲୋଚନା, ଡ଼ାଲଚିନି, ତେଜପତ୍ର, ଅଳାଇଚ ଓ ନାଗେଶ୍ୱର ପ୍ରତ୍ୟେକ ଦ୍ରବ୍ୟର ଚୂର୍ଣ୍ଣ ଦୁଇତୋଳା, ସିଦ୍ଧି ଚୂର୍ଣ୍ଣ, ( ପତ୍ର ) ସାତପଲ ଏବଂ ଚିନି ସମୁଦାୟ ଚୂର୍ଣ୍ଣର ସମାନ, ଏହି ସମସ୍ତ ଉତ୍ତମ ରୂପେ ଏକତ୍ର କରିନେବ । ଏହି ଔଷଧ ସେବନ କଲେ ଗ୍ରହଣୀ, ଅତିସାର, ଅଗ୍ନିମାନ୍ଦ୍ୟ, କାସ, ଶ୍ୱାସ, କ୍ଷୟ, ଅରୋଚକ, ପୀନସ, ବାତ ଶ୍ଳେଷ୍ମିକ ରୋଗ ଓ ପ୍ରତିଶ୍ୟାୟ ନିବାରିତ ହୁଏ ।



୫୨—ଶୃଙ୍ଗ୍ୟାଦ ଚୂର୍ଣ୍ଣ ( ହିକ୍କା ଓ ଶ୍ୱାସରେ )

କାକଡ଼ାଶୃଙ୍ଗୀ, ତ୍ରିକଟୁ, ତ୍ରିଫଳା, କଣ୍ଟକାରୀ, ବ୍ରାହ୍ମଣ ଯଷ୍ଠୀ, କୁଡ଼ ଓ ପଞ୍ଚଲବଣ, ଏହି ସମୁଦାୟ ଦ୍ରବ୍ୟ ସମଭାଗରେ ଏକତ୍ର କରି ଉପଯୁକ୍ତ ପରିମାଣରେ ଉଷ୍ଣଜଳ ସହିତ ସେବନ କଲେ ହିକ୍କା, ଶ୍ୱାସ, ଊର୍ଦ୍ଧ୍ୱବାୟୁ, କାସ, ଅରୁଚି ଓ ପୀନସ ରୋଗ ଉପଶମ ହୁଏ ।



୫୭—ପଞ୍ଚନିମ୍ବ ଚୂର୍ଣ୍ଣ ( ବାତରକ୍ତରେ )

ନିମ୍ବର ପତ୍ର, ମୂଳ, ଚୋପା, ଫୁଲ ଓ ଫଳ, ସମାନଭାଗରେ ଚୂର୍ଣ୍ଣ କରି ତାହା ଘିଅ ମହୁ ଗୋମୂତ୍ର ଜଳ ଓ ଅଁଳା ରସ ବା ଦୁଧ ସହିତରେ ଉପଯୁକ୍ତ ମାତ୍ରାରେ ପ୍ରତିଦିନ ପିଇଲେ ଏକ ବର୍ଷର ବାତ ରକ୍ତ ଓ କୁଷ୍ଠ ପ୍ରଶମିତ ହୁଏ । ପଥ୍ୟ ଦୁଧ, ଘିଅ ଓ ପୁରୁଣା ସରୁ ଚାଉଳ ଅନ୍ନ ମଦ୍ୟ ନିଷେଧ ।



୫୮—ପାଠାଦି ଚୂର୍ଣ୍ଣ ( ଶ୍ଳେଷ୍ମାତିସାରରେ )

ଅକାନବିନ୍ଧ, ଦଚ, ତ୍ରିକଟୁ, କୁଡ଼ ଓ କଟୁକି ଏହାର ଚୂର୍ଣ୍ଣ ଉପଯୁକ୍ତ ମାତ୍ରାରେ ଉଷ୍ଣଜଳ ସହିତ ସେବନ କଲେ ଶ୍ଳେଷ୍ମାତିସାର ବିନଷ୍ଟ ହୁଏ ।



୫୯—ଗୁଡ଼ୁଚ୍ୟାଦି ଚୂର୍ଣ୍ଣ ( ପ୍ଳୀହାରେ )

ଗୁଡ଼ୁଚି, ଅଙ୍ଗାରୀ, ଶୁଣ୍ଠି, ଚିତ୍ରେଇତା, ଶ୍ୱେତବନବନା, ମୁଥା, ପିପ୍ପଳୀ, ଯବକ୍ଷାର, ଶୋଧିତ ହୀରାକସ, ( ଅଗ୍ନିରେ ପୋଡ଼ିଲେ ଶୋଧିତ ହୁଏ ) ଓ ତମ୍ବାଛେଲି ପ୍ରତ୍ୟେକର ଚୂର୍ଣ୍ଣ ସମଭାଗରେ ଏକତ୍ର ମିଶ୍ରିତ କରି ଏକଅଣା ଠାରୁ ଦୁଇଅଣା ପର୍ଯ୍ୟନ୍ତ ମାତ୍ରା ବିବେଚନା କରି ପ୍ରୟୋଗ କରିବ । ଏଥିରେ ଯକୃତ, ପ୍ଳୀହା, ପାଣ୍ଡୁ, ଅଗ୍ନିମାନ୍ଦ୍ୟ ଓ ଅରୁଚି, ପ୍ରଭୃତି ଉପଦ୍ରବ

ଯୁକ୍ତ ସର୍ବପ୍ରକାରଦୋଷଜଜଡ଼ଜଳ ଦୋଷ ଜାତ "ମ୍ୟାଲେରିଆ" ଜ୍ୱରରେ ଏହି ଔଷଧ ବିଶେଷ ଉପକାରକ ।



୭୦—ଜ୍ୱାଳାମୁଖ ଚୂର୍ଣ୍ଣ ( ଅଗ୍ନିମାନ୍ଦ୍ୟରେ )

କୃଷ୍ଣ ଅପରାଜିତା, ଶତାବରୀ ଓ ଗୁଳୁଚି ପ୍ରତ୍ୟେକ ଦ୍ରବ୍ୟ ଏକପଲ, ଚିତା, ଶୁଣ୍ଠୀ, ପିପ୍ପଳୀ, ମରିଚ, ହରଡ଼ା, ବାହାଡ଼ା ଓ ଅଁଳା ପ୍ରତ୍ୟେକ ତିନି ପଲ ଏବଂ ଗଞ୍ଜାଇ ୭ ପଲ ଏ ସବୁ ଦ୍ରବ୍ୟ ଏକତ୍ର ଚୂର୍ଣ୍ଣ କରି ଭୃଙ୍ଗରାଜ ରସରେ ଭାବନା ଦେଇ ଘିଅ ଓ ମହୁ ଏଥିରେ ମିଶାଇ ଲେହନ କଲେ ଅଗ୍ନିମାନ୍ଦ୍ୟ, ଗ୍ରହଣୀ, ଆମବାତ, ବାତରକ୍ତ, କୁଷ୍ଠ, ମେହ, ଭଗନ୍ଦର, ବିସର୍ପ ଓ ଜ୍ୱର ରୋଗ ବିନଷ୍ଟ ହୁଏ । ଏହି ଔଷଧ ସେବନକାଳରେ ଖାଦ୍ୟ ବିଷୟରେ କୌଣସି ଧରାବନ୍ଧା ନିୟମ ନାହିଁ । ଏହି ଔଷଧ ତୁଷ୍ଟି ପୁଷ୍ଟି, ବଳବୀର୍ଯ୍ୟ ଓ ସୁଖ ପ୍ରଦାନ କରେ ।



୭୧—ପ୍ରାଣେଶ୍ୱର ଚୂର୍ଣ୍ଣ [ ଅଗ୍ନିମାନ୍ଦ୍ୟରେ ]

ଶୋଧିତ ପାରଦ, ଶୋଧିତ ଗନ୍ଧକ, ମରିଚ, ପିପ୍ପଳୀ ପ୍ରତ୍ୟେକ ଦ୍ରବ୍ୟ ୪ ତୋଳା, ଯବକ୍ଷାର ୪ଗୁଣପଲ ଏବଂ ଗଞ୍ଜାଇ ତିନିପଲ, ସୁବର୍ଣ୍ଣମାକ୍ଷୀ ଭସ୍ମ ଦୁଇତୋଳା ଏ ସମସ୍ତ ଏକତ୍ର ଚୂର୍ଣ୍ଣ କରି ଅଧତୋଳା ପରିମାଣରେ କାଞ୍ଜୀ ସହିତ ସେବନ କଲେ ଅଗ୍ନି-ମାନ୍ଦ୍ୟରୁ ଜାତହେବା ସମସ୍ତ ରୋଗ, ପ୍ଲୀହା, ମଳକଣ୍ଟକ, ଗୁଳ୍ମ-ଜ୍ୱର, ଆଠପ୍ରକାର ଜ୍ୱର ରୋଗ, ଗ୍ରହଣୀ ରୋଗ, ଶୋଥ, ଶୂଳ, କାମଳା, କାସ ଓ କର୍ଣ୍ଣରୋଗ ଶୀଘ୍ର ବିନଷ୍ଟ ହୁଏ । ଏହି ଔଷଧ ମନୁଷ୍ୟଙ୍କୁ ମୃତ୍ୟୁମୁଖରୁ ରକ୍ଷା କରେ ।



୭୨—ଟାଙ୍ଗାରିଆ ଭସ୍ମ ଚୂର୍ଣ୍ଣ ( ଅଜୀର୍ଣ୍ଣରେ )

ତନ୍ତୁଳ ଛେଲିର ରସ, ସୈନ୍ଧବ, ଯୁଆଣୀ, ଠାଙ୍ଗଣାଖଇ, ହିଙ୍ଗୁଳ, ଚିତାମୂଳ, ଜୀରା, ବେଗୁନିଆଁ, ମୂଳର ଚୂର୍ଣ୍ଣ ଏବଂ

ରସସିନ୍ଦୂର ଏ ସବୁ ଦ୍ରବ୍ୟ ସମଭାଗରେ ଚୂର୍ଣ୍ଣ କରି ଦୁଇଅଣା ମାତ୍ରାରେ ସେବନ କଲେ ଅଜୀର୍ଣ୍ଣ, କାସ, କ୍ଷୟ, ଶ୍ୱାସ ଓ ସକଳ ପ୍ରକାର ବାତାଧିକ ନିବାରିତ ହୁଏ ।



୭୩—ବୃହଦବଟିକ ମୁଖ ଚୂର୍ଣ୍ଣ [ ଅଜୀର୍ଣ୍ଣରେ ]

ସାଜିକ୍ଷାର, ଯବକ୍ଷାର, ପଞ୍ଚଲବଣ, ହିଙ୍ଗୁ, ହବୁଷା ଫଳ, ଦେବଦାରୁ, ଜୀରା, କଳାଜୀରା, ଗନ୍ଧଶୁଣ୍ଠୀ, ବ୍ରାହ୍ମଣଝାଟିଆ, ସୁନାରି ଅଠା, ଇନ୍ଦ୍ରଯବ, କାରୁଦଳଦା, ଅଠରାଷୀ ପ୍ରିୟଙ୍ଗୁ, ବଡ଼ଙ୍ଗ, ଡମ୍ବୁଡ଼ୀ, ଅକାନ ବିନ୍ଧ, ବଚ, ସାମୁଦ୍ରା ଲବଣ, ଅମ୍ଳଙ୍ଗୀ ପତ୍ର, କୁଡ଼, ତେଜପତ୍ର, ଅଁଳା, ପୁଅଣୀ, ଅଲ୍ଲାଳିଚ, ତେନ୍ତୁଳି, ଚିତାମୂଳ, ମୁଥା, ଅମ୍ଳବେତସ (✽ଏହା ମଧ୍ୟ ତଳ ଲିଖିତ ଠିକଣାରେ ମିଳେ ।) ହରିଡ଼ା, କରଞ୍ଜ ମଞ୍ଜୀ, ଲୌହ ମଣ୍ଡୁର, ଘଣ୍ଟା ପାଟେଲୀର କ୍ଷାର, କୋଇଲେଖାର ଗାର, ସଜନାର କ୍ଷାର, ପଳାଶକ୍ଷାର, ଗୁଆିଷାର, ଏସବୁଦ୍ରବ୍ୟପ୍ରତ୍ୟେକରସମଭାଗରେ ଛୁହଣିକରି ଯୁକ୍ତ (ଶାସ୍ତ୍ରୀୟ ପାରିଭାଷିକ କାଞ୍ଜି)ରେ ଅଦାରସରେ ଓ ଲେମ୍ବୁ ରସରେ ତିନିଦିନ ଭାବନା ଦେବ । ଏହି ଚୂର୍ଣ୍ଣ ସେବନ କଲେ ଅଜୀର୍ଣ୍ଣ, ଗୁଳ୍ମ, ଅର୍ଶ, ପ୍ଲୀହା, ଉଦର, ଅଷ୍ଠୀଳା, ବାତରକ୍ତ, ଅନ୍ତ୍ରକୋଷ ରୋଗ ନିବାରିତ ହୁଏ । ଏହା ଅତିଶୟ ଅଗ୍ନି ଦୀପକ ନାନାବିଧ ଗୁରୁପାକ ଅନ୍ନ ବ୍ୟଞ୍ଜନ ଭୋଜନ କରି ଏହିଚୂର୍ଣ୍ଣ ସେବନ କଲେ ଅତି ଅଳ୍ପ ସମୟରେ ସେସବୁ ଭସ୍ମୀଭୂତହୁଏ ।



---

✽ ଏହାକୁ ହିନ୍ଦି ଭାଷାରେ ହାଜବେର କହନ୍ତି । ଏହା ଏଠାରେ କିଣିବାକୁ ମିଳେ ନାହିଁ । ଯାହାଙ୍କୁ ଆବଶ୍ୟକ ହୁଏ, ସେ ବାବୁ ରୂପଲାଲ ବୈଶ୍ୟ, ବୃଟୀପ୍ରସ୍ତୁତକ କାର୍ଯ୍ୟାଳୟ, ଇଂଗଲିଶିୟା ଲାଇନ, ବନାରସ ଛାଉଣୀ—ଠିକଣାରେ ପତ୍ର ଦେଲେ ପାଇ ପାରିବେ । ଏକ ସେର ମୂଲ୍ୟ ଟ ୦।୵ ପାଞ୍ଚଅଣା ।

୨୪—ଭାସ୍କର ଲବଣ ଚୂର୍ଣ୍ଣ (ଅଗ୍ନିମାନ୍ଦ୍ୟରେ)

ପିପ୍‌ପଳୀ, ବଣପିପ୍‌ପଳାମୂଳ, ଧନିଆଁ, କଳାଜୀରା, ସୈନ୍ଧବ ଲୁଣ, ବିଟଲୁଣ, ତେଜପତ୍ର, ତାଳିଶପତ୍ର ଓ ନାଗେଶ୍ୱର, ଏହିଗୁଡ଼ିକ ଦ୍ରବ୍ୟର ପ୍ରତ୍ୟେକର ଚୂର୍ଣ୍ଣ ୨ପଳ(୧୬)ତୋଳା । ସମୁଦ୍ରଲୁଣ ୫ପଳ ମରିଚ, ଜୀରା ଓ ଶୁଣ୍ଠୀ ଏହି ଦ୍ରବ୍ୟ ପ୍ରତ୍ୟେକ ୧ପଳ, ଡ଼ାଲଚିନି ୪ତୋଳା, ଅଳାଇଚ ୪ତୋଳା, କରକଚ (ଗୋଡ଼ା) ଲୁଣ ୮ପଳ, ଅମ୍ଳଡ଼ାଳିମ୍ବର ଚୋପା ୪ପଳ, ଓ ଅମ୍ଳବେତସ ୨ପଳ ଏ ସମସ୍ତ ଦ୍ରବ୍ୟର ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ନେବ । ମାତ୍ରା ୫ରତିଠାରୁ ୨୨ମଷା ତକ । ଅନୁପାନ ଜଳ ଓ ଘୋଳ ଦହି । ଏହି ଔଷଧ ସେବନ କଲେ ଅଗ୍ନି ବର୍ଦ୍ଧିତ ଓ ଅଗ୍ନିମାନ୍ଦ୍ୟ ଜନିତ ରୋଗ ସବୁ ଶାନ୍ତ ହୁଏ ।



୨୫—କର୍ପୂରାଦ୍ୟ ଚୂର୍ଣ୍ଣ ( ଅର୍ଶରେ )

କର୍ପୂର, ଲବଙ୍ଗ, ଅଳାଇଚ, ଡ଼ାଲଚିନି, ନାଗେଶ୍ୱର, ଜାଇ-ଫଳ, ବେଣାମୂଳ, ଶୁଣ୍ଠୀ, କଳାଜୀରା, କୃଷ୍ଣାଗୁରୁ, ବଂଶଲୋଚନା, ଜଟାମାଂସୀ, ନୀଳକଇଁ, ପିପ୍‌ପଳୀ, ରକ୍ତ ଚନ୍ଦନ, ତଗର ପାଦୁକା, କୁଟବଲ ଓ କାଙ୍କୋଲି ଏହି ସମୁଦାୟ ଦ୍ରବ୍ୟ ସମଭାଗରେ ଏକତ୍ର ଚୂର୍ଣ୍ଣ କରି ସକଳ ଦ୍ରବ୍ୟରେ ଅର୍ଦ୍ଧେକ ପରିମିତ ଚିନି ସହିତ ମିଶ୍ରିତ କରିବ । ଏହା ବତାର୍ଶରେ ଶ୍ରେଷ୍ଠ ଔଷଧ ଏବଂ ଅତିସାର, ଗୁଳ୍ମ, ଗ୍ରହଣୀ, ଅରୁଚି, ଶ୍ୱାସ, କାସ, ହିକ୍‌କା, ପ୍ରମେହ ଓ ହୃଦ୍‌ରୋଗ ପ୍ରଭୃତି ପୀଡ଼ାନାଶକ ।



୨୬—ବିଜୟ ଚୂର୍ଣ୍ଣ ( ଅର୍ଶରେ )

ତ୍ରିକଟୁ, ତ୍ରିଫଳା, ଦେବଦାରୁ, ବଚ, ଅଜମୋଦ, ଯବକ୍ଷାର, ହଳଦୀ, ଦାରୁହଳଦୀ, ଗୁଳୁଚି, କଟୁକୀ, ଇନ୍ଦ୍ରଯବ, ଚିତାମୂଳ, ହିଙ୍ଗୁ, ପଞ୍ଚଲବଣ, ପିପ୍‌ପଳୀମୂଳ, ବେଲଶୁଣ୍ଠି ଓ ଯୁଆଣୀ,

ଏହି ସକଳ ଦ୍ରବ୍ୟ ସମଭାଗ ଏକତ୍ର ଚୂର୍ଣ୍ଣ କରି ଉଷ୍ଣ ଜଳ ସହିତ ଉପଯୁକ୍ତ ମାତ୍ରାରେ ସେବନ କଲେ ଅର୍ଶ, ଭଗନ୍ଦର, ଗ୍ରହଣୀ, ବାତଗୁଳ୍ମ, ଶୋଥ, ଉଦର, ପାଣ୍ଡୁ, କାମଳା, ଉଦାବର୍ତ୍ତ, ଅନ୍ତ୍ରବୃଦ୍ଧି, କୃମି, ଜ୍ୱର, କାସ, ଶ୍ୱାସ, ହିକ୍କା ଓ ପାର୍ଶ୍ୱଶୂଳ ପ୍ରଭୃତି ବିବିଧ ପୀଡ଼ା ନିବାରିତ ହୁଏ ।



## ୭୭—ମଧ୍ୟ ଗଙ୍ଗାଧର ଚୂର୍ଣ୍ଣ ( ଜ୍ୱରାତିସାରରେ )

ବେଲଶୁଣ୍ଠୀ, ଶିଙ୍ଗଡ଼ା ପତ୍ର, ଡ଼ାଳିମ୍ବ ପତ୍ର, ମୁଥା, ଅଟୋଷୀ-ଶ୍ୱେତଝୁଣା, ଧାତୁକୀ ଫୁଲ, ମରିଚ, ପିପ୍ପଳୀ, ଶୁଣ୍ଠୀ, ବାଲୁ-ହଳଦୀ, ଚରେଇଡୀ, ନିମ୍ବଛେଲି, ଜାମୁଛେଲି, ରସାଞ୍ଜନ, ଇନ୍ଦ୍ର-ଯବ, ଅକାନବିନ୍ଧ, ବଗହଡ଼ାନ୍ତା, କୁଟବେଲ, ଶିମିଳୀ ଅଠା ସିଦ୍ଧି ପତ୍ର ( ପତ୍ର ) ଓ ଭୃଙ୍ଗରାଜ, ଏଥିରୁ ପ୍ରତ୍ୟେକର ଚୂର୍ଣ୍ଣ ସମଭାଗ ଓ ପିତାକୋରୁଆଁ ମୂଳଛେଲି ଚୂର୍ଣ୍ଣ ସର୍ବ ସମାନ, ଏହି ସକଳ ଦ୍ରବ୍ୟ ଏକତ୍ର ମିଶ୍ରିତ କରିବ । ଅନୁପାନ ଛେଳି ଦୁଧ, ଅନ୍ନମଣ୍ଡ ବା ମଧୁ । ମାତ୍ରା ଏକଅଣା, ଏହା ସେବନେ ଜ୍ୱରାତିସାର ଗ୍ରହଣୀ, ଶୋଥ, ପାଣ୍ଡୁ, ଅରୁଚି, କାସ ଓ ତୃଷ୍ଣା, ପ୍ରଭୃତି ରୋଗ ନିବାରିତ ହୁଏ ।



## ୭୮—ଲବଙ୍ଗାଦି ଚୂର୍ଣ୍ଣ ( ରାଜଯକ୍ଷ୍ମାରେ )

ଲବଙ୍ଗ, କାଙ୍କୋଲି, ବେଣାଚେର, ରକ୍ତଚନ୍ଦନ, ତଗର ପାଦୁକା, ନୀଳୋତ୍ପଳ, ଜୀର, ଗୁଳୁଗୁଡ଼ି, ପିପ୍ପଳୀ, ଅଗୁରୁ, ଡ଼ାଲଚିନି, ନାଗେଶ୍ୱର, ଜୀର, ଶୁଣ୍ଠୀ, ଜଟାମାଂସୀ, ମୁଥା, ଅନନ୍ତ ମୂଳ, ଜାଇଫଳ ଓ ବଂଶଲୋଚନା, ଏଥିରୁ ପ୍ରତ୍ୟେକର ଚୂର୍ଣ୍ଣ ଏକଭାଗ ଏବଂ ଚିନି ଆଠଭାଗ ଏକତ୍ର ମିଶ୍ରିତ କରି ଉପଯୁକ୍ତ ମାତ୍ରାରେ ସେବନ କଲେ ଯକ୍ଷ୍ମା, ଶ୍ୱାସ, କାସ ଓ ଗ୍ରହଣୀ ପ୍ରଭୃତି

ରୋଗ ପ୍ରଶମିତ ହୁଏ । ଏହା ରେଚକ ଅଗ୍ନିଦୀପକ, ତୃପ୍ତିକାର, ବଳପ୍ରଦ, ଶୁକ୍ରଜନକ ଓ ତ୍ରିଦୋଷ ନାଶକ ।



୬୯—ହରିତକ୍ୟାଦ୍ୟ ଚୂର୍ଣ୍ଣ (ବିବନ୍ଧ ଅତିସାରରେ)

ହରିଡ଼ା, ଅତେଇଷୀ, ସୈନ୍ଧବଲବଣ, ସୌବର୍ଚ୍ଚଳ ଲବଣ, ବଚ ଓ ହିଙ୍ଗୁ, ଏହାର ଚୂର୍ଣ୍ଣ ଉପଯୁକ୍ତ ମାତ୍ରାରେ ଉଷ୍ଣଜଳ ସହିତ ସେବନ କରିଲେ ଆମାତିସାର ନିବାରିତ ହୁଏ ।



୭୦—ମାକ୍ଷିକାଦ୍ୟ ଚୂର୍ଣ୍ଣ ( ପ୍ରମେହରେ )

ସ୍ୱର୍ଣ୍ଣମାକ୍ଷିକ, ପାରଦ, ଗନ୍ଧକ, ଖର୍ପର, ଗେରୁମାଟି, ଶିଳାଜତୁ, ଅଭ୍ର, ଲୌହ, ଶିମିଳଫୁଲ, ଶିମୁଳଛେଲି, ଭୁଇଁକଖାରୁ ଓ ଗୋକ୍ଷୁର ମଞ୍ଜୀ, ଏହି ସକଳ ଦ୍ରବ୍ୟ ସମଭାଗରେ ନେଇ ମର୍ଦ୍ଦନ କରିବ । ଏହା ଏକମଷା ପରିମାଣରେ ସେବନ କରିଲେ ଶୁକ୍ରମେହ ପ୍ରଶମିତ ହୁଏ ।



୭୧—ବୋଷ୍ୟାଦ୍ୟ ଚୂର୍ଣ୍ଣ ( ଜ୍ୱରାତିସାରରେ )

ଶୁଣ୍ଠୀ, ପିପ୍‌ପଳୀ, ମରିଚ, ଇନ୍ଦ୍ରଯବ, ନିମ୍ବଛେଲି, ଚିରେଇତା, ଭୃଙ୍ଗରାଜ, ଚିତାମୂଳ, କଟୁକୀ, ଅକାନବିନ୍ଧ, ଦାରୁହଳଦୀ ଓ ଅତେଇଷୀ ପ୍ରତ୍ୟେକ ଦ୍ରବ୍ୟ ସମଭାଗ ଏବଂ ସର୍ବ ସମାପନ ପିତାକୋରୁଅଁ ମୂଳ ଛେଲି ଚୂର୍ଣ୍ଣ ଏକତ୍ରିତ କରି ଏକଅଣ୍ଟା ମାତ୍ରାରେ ଗୁଡ଼ଳଧୂଆଁ ପାଣି ସହିତ ପାନ କରିବ ବା ଦ୍ୱିଗୁଣ ମହୁ ସହିତ ଲେହ କରିବ । ଏହା ପାଚକ ମଳ ସଂଗ୍ରାହକ, ଜ୍ୱରାତିସାର, ତୃଷ୍ଣା, ଅରୁଚି, ପ୍ରମେହ, ଗ୍ରହଣୀ, ପ୍ଳୀହା, କାମଳା, ପାଣ୍ଡୁ ଓ ଶୋଥ ରୋଗ ବିନାଶ ହୁଏ ।



୭୨—ମାର୍କଣ୍ଡେୟ ଚୂର୍ଣ୍ଣ ( ଗ୍ରହଣୀରେ )

ପାରଦ, ଗନ୍ଧକ, ହିଙ୍ଗୁଳ, ଠୋଙ୍ଗଣା, ତ୍ରିକଟୁ, ଜାଇଫଳ, ତେଜପତ୍ର, ଲବଙ୍ଗ, ଅଳାଇଚ, ମୁଥା, ଚନ୍ଦ୍ରାମୂଳ, ଗଜପିପ୍ପଳୀ ଶୁଣ୍ଠୀ, କୁଟବେଲ, ଅଭ୍ର, ଧାତୁକୀ ଫୁଲ, ଅଜୋଷୀ, ସଜନାମଞ୍ଜୀ, ଶିମିଳୀ ଅଠା, ଅହିଫେଣ, ଓ ଧଳାଣ ଛେଲି, ଏହି ସମୁଦାୟ ଦ୍ରବ୍ୟ ସମଭାଗରେ ଚୂର୍ଣ୍ଣ ଗ୍ରହଣ କରି ଚିନି ସହିତ ଉପଯୁକ୍ତ ପରିମାଣରେ ସେବନ କଲେ ସଂଗ୍ରହ ଗ୍ରହଣୀ, ଅଗ୍ନିମାନ୍ଦ୍ୟ, ବଳହାନି, କୃଶତା ଓ ଧାତୁକ୍ଷୟ ପ୍ରଭୃତି ରୋଗରେ ବିଶେଷ ଉପକାର ହୁଏ ।



୭୩—ପାରସିଯ୍ୟାଦି ଚୂର୍ଣ୍ଣ ( କୃମି ରୋଗରେ )

ଖୋରାସାନି, ଯୁଆଣୀ, ମୁଥା, ପିପ୍ପଳୀ, କାକଡ଼ାଶୃଙ୍ଗୀ, ବିଡ଼ଙ୍ଗ, ଅଜୋଷୀ, ଏହି ଦ୍ରବ୍ୟର ଚୂର୍ଣ୍ଣ ସମଭାଗରେ ମିଶ୍ରିତ କରି ମଧୁ ସହିତ ଉପଯୁକ୍ତ ପରିମାଣରେ ସେବନ କଲେ କୃମି, ବମି, ଅତିସାର, ଜ୍ୱର ଓ କାଶ ପ୍ରଭୃତି ପ୍ରଶମିତ ହୁଏ ।



୭୪—ଫଳ ତ୍ରିକାଦ୍ୟ ଚୂର୍ଣ୍ଣ ( ମନ୍ଦାଗ୍ନ୍ୟାଦି ରୋଗରେ)

ତ୍ରିଫଳା, ଡାହୁଡ଼ି, ଶୁଆଁନଇ, ଦେବଦାରୁ, ଶୁଣ୍ଠୀ, ବଣଯୁଆଣୀ ଯୁଆଣୀ, ଦାରୁହଳଦୀ, ପଞ୍ଚଲବଣ, ସଉପ, ବଚ, କୁଡ଼, ତାଳଚିନି, ତେଜପତ୍ର, ଅଳାଇଚ ଓ ଗନ୍ଧନାକୁଳୀ, ଏହି ପ୍ରତ୍ୟେକ ସମଭାଗ ଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ଅବସ୍ଥା ଅନୁଯାୟୀ ଦୁଇ ଅଣାରୁ ଆଠଅଣା ପର୍ଯ୍ୟନ୍ତ ମାତ୍ରା କରିବ । ଶୀତଳ ଜଳ ସହ ସେବନ କରିଲେ ମନ୍ଦାଗ୍ନ୍ୟାଦି, ଅଗ୍ନିମାନ୍ଦ୍ୟ, ଓ ସଂଗ୍ରହ ଗ୍ରହଣୀ ନିବାରିତ ହୁଏ ।



୭୫—ପୁନର୍ନବାଦ୍ୟ ଚୂର୍ଣ୍ଣ ( ଶୋଥ ରୋଗରେ

ପୁନର୍ନବା, ଦେବଦାରୁ, ହରିଡ଼ା, ଅକାଶବନ୍ଧ, ଓଦ୍ରଲମୂଳ, ଗୋଖରୀ, ବୃହତୀ, କଣ୍ଟକାରୀ, ଚିତାମୂଳ, ହଳଦୀ, ଦାରୁହଳଦୀ, ପିପ୍ପଳୀ, ଗଜପିପ୍ପଳୀ ଓ ବାସଙ୍ଗ ଛେଲି ଏହି ସକଳ ଦ୍ରବ୍ୟ ସମଭାଗ ଗ୍ରହଣ କରିବ। ଏହି ଚୂର୍ଣ୍ଣ ଗୋମୂତ୍ର ସହିତ ପାନ କଲେ ଆଠ ପ୍ରକାର ଶୋଥ ରୋଗ ବିନଷ୍ଟ ହୁଏ, ଏବଂ ବ୍ରଣ ରୋଗରେ ଶାନ୍ତିକ ହୁଏ।



୭୬—କରଞ୍ଜାଦ୍ୟ ଚୂର୍ଣ୍ଣ ( ଅର୍ଶରେ )

କରଞ୍ଜ ଫଳ ଶସ୍ୟ, ଚିତାମୂଳ, ସୈନ୍ଧବ ଲବଣ, ଶୁଣ୍ଠି, ଇନ୍ଦ୍ରଯବ ଓ ଫଣଫଣା ଛେଲି, ଏହାର ସମଭାଗ ଚୂର୍ଣ୍ଣ ଏକତ୍ରରେ ମିଶ୍ରିତ କରି ଉପଯୁକ୍ତ ମାତ୍ରାରେ ଘୋଳ ଦହି ସହିତ ସେବନ କଲେ ରକ୍ତାର୍ଶ ନିବାରିତ ହୁଏ।



୭୭—ବଚାଦ୍ୟ ଚୂର୍ଣ୍ଣ ( ଗୁଳ୍ମ ରୋଗେ )

ବଚ, ହରିଡ଼ା, ହିଙ୍ଗୁ, ସୈନ୍ଧବ ଲବଣ, ଅମ୍ଳବେତସ, ଯବକ୍ଷାର, ଓ ଯଁଆଣି ପ୍ରତ୍ୟେକ ଦ୍ରବ୍ୟର ସମଭାଗ ଚୂର୍ଣ୍ଣ ଏକ, ମିଶ୍ରିତ କରି ଅଧତୋଳା ମାତ୍ରାରେ ଉଷ୍ଣଜଳ ସହିତ ସେବ, କରିଲେ ଗୁଳ୍ମରୋଗ ପ୍ରଶମିତ ହୁଏ, ଏହା ଅଗ୍ନି ବର୍ଦ୍ଧକ ଏବଂ ବେଦନା ନିବାରକ।



୭୮—ଶଙ୍ଖଚୂର୍ଣ୍ଣ ( ଶୂଳ ରୋଗରେ )

ଶଙ୍ଖ ଭସ୍ମ ଏକପଳ, ସୈନ୍ଧବ, ସଚଳ, ବିଟ, ସାମ୍ଭର, ଉଦ୍ଭିଦ ଲବଣ, ଯବକ୍ଷାର, ଟାଙ୍ଗଣା, ଜାଇଫଳ, ଲୋପ, ଯୁଆଣୀ, ହିଙ୍ଗୁ ଓ ଏକଠୁ, ପ୍ରତ୍ୟେକ ଦ୍ରବ୍ୟ ଏକ ପଳ ଚୂର୍ଣ୍ଣ

କରି ଏକ ମଷା ମାହାରେ ଉଷ୍ଣଜଳ ସହିତ ସେବନ କଲେ ଆମବାତ ଓ ନାନା ପ୍ରକାର ଶୂଳ ରୋଗ ବିନଷ୍ଟ ହୁଏ ।



୭୯—ବୃହତ୍ ଲବଙ୍ଗାଦି ଚୂର୍ଣ୍ଣ (ଗ୍ରହଣୀରେ)

ଲବଙ୍ଗ, ଅତୋଷୀ, ମୁଥା, ପିପ୍‌ପଳୀ, ମରିଚ, ସୈନ୍ଧବ, ହବୁଷା, ଧନିଆଁ, କାଫଡ଼, କୁଡ଼ଜାଇଫି, ଜାଇଫଳ, କୃଷ୍ଣଜୀର ସଚଳ ଲବଣ, ରସାଞ୍ଜନ, ଧାତୁକୀ ଫୁଲ, ଶିମିଳି ଅଠା, ଅକାନବିନ୍ଧ, ତେଜପତ୍ର, ତାଳିଶପତ୍ର, ନାଗେଶ୍ୱର, ଜଟାମୂଳ, ବିଟଲବଣ, ପିତା ଲାଉ, ବେଲଶୁଣ୍ଠା, ଡାଲଚିନି, ଅଳାଇଚ, ପିପ୍‌ପଳୀ ମୂଳ, ବଣଯୁଆଣୀ, ବଡ଼ହ କାନ୍ତା, ଇନ୍ଦ୍ରଯବ, ଶୁଣ୍ଠୀ, ଡାଳିମ୍ବ ଫଳ ଚୋପା, ଯବକ୍ଷାର, କଦମ୍ବଛେଲି, ଶ୍ୱେତ ଝୁଣା, ସାଜିକ୍ଷାର, ସମୁଦ୍ର ଫେଣ, ଟାଙ୍ଗଣା, କୁଡ଼ବେଲ, ପିତାକରୁଆ, ମୂଳ ଛେଲି, ଜାମୁ ଛେଲି, ଆମ୍ବ ଛେଲି, କଟୁକୀ ଏବଂ ଶୋଧିତ ଅଭ୍ର, ଲୌହ, ଗନ୍ଧକ ଓ ପାରଦ, ପ୍ରତ୍ୟେକ ଦ୍ରବ୍ୟର ସମଭାଗ ଚୂର୍ଣ୍ଣ ଏକତ୍ର ମିଶ୍ରିତ କରିବା ଅନୁପାନ ମହୁ ଓ ଘୃତ ଧୂଆ ପାଣି । ଏହା ସେବନ କଲେ ଉତ୍କଟ ଗ୍ରହଣୀ, ସର୍ବପ୍ରକାର ଅତିସାର, ଜ୍ୱର, ଅରୋଚକ, ଅଗ୍ନିମାନ୍ଦ୍ୟ, ଶ୍ୱାସ, କାସ, ବମି, ଅମ୍ଳପିତ୍ତ, ହିକା, ପ୍ରମେହ, ହଳୀମକ ପାଣ୍ଡୁ, ଅର୍ଶ, ପିହା, ଗୁଳ୍ମ, ଉଦର, ଅନାହ, ଶୋଥ, ପୀନସ ଆମବାତ, ଅଜୀର୍ଣ୍ଣ ଓ ପ୍ରଦର ପ୍ରଭୃତି ନାନା ପ୍ରକାର ରୋଗ ବିନଷ୍ଟ ହୁଏ ।



୮୦—କର୍ଣ୍ଣାଦ୍ୟ ଚୂର୍ଣ୍ଣ (ହୃଦ୍‌ରୋଗରେ)

ଅର୍ଜୁନ ଛେଲି, ବଚ, ରାସ୍ନା, ବଳା ଗୋରକ୍ଷ ଘୃଣ୍ଡଳ, ହରିଡ଼ା, ଗନ୍ଧଶୁଣ୍ଠୀ, କୁଡ଼, ପିପ୍‌ପଳୀ ଓ ଶୁଣ୍ଠୀ ପ୍ରତ୍ୟେକ ସମଭାଗ ଚୂର୍ଣ୍ଣ ମିଶ୍ରିତ କରି ଅଧତୋଳା ମାହାରେ ଗୁଆ ଘିଅ ସହିତ ସେବନ କଲେ ସର୍ବ ପ୍ରକାର ହୃଦ୍‌ରୋଗନାଶ ହୁଏ ।



୮୧--ଭୂନମ୍ବାଦ୍ୟ ଚୂର୍ଣ୍ଣ ( ଗ୍ରହଣୀରେ )

ଚିରେଇତା ଦୁଇତୋଳା, କଟୁକୀ, ତ୍ରିକଟୁ, ମୁଥା ଓ ଇନ୍ଦ୍ରଯବ ପ୍ରତ୍ୟେକ ଏକ ତୋଳା, ଚିତା ମୂଳ ଦୁଇତୋଳା ଏବଂ ପିତା କୋରୁଅ ଛେଲି ଷୋଳ ତୋଳା, ଏକତ୍ର ଚୂର୍ଣ୍ଣ କରି ଉପଯୁକ୍ତ ମାତ୍ରାରେ ଗୁଡ଼ ପଣା ସହିତ ପାନ କଲେ ଗ୍ରହଣୀ, ଗୁଳ୍ମ, କାମଳ ଜ୍ୱର, ପାଣ୍ଡୁ, ମେହ, ଅରୁଚି ଓ ଅତିସାର ନିବାରିତ ହୁଏ ।



୮୨—ପିପ୍ପଳୀ ମୂଳାଦ୍ୟ ଚୂର୍ଣ୍ଣ ( ଗ୍ରହଣୀରେ )

ପିପ୍ପଳୀ ମୂଳ, ପିପ୍ପଳୀ, ଯବକ୍ଷାର, ସାଚିକ୍ଷାର, ପଞ୍ଚଲବଣ, ଟାଭ ଲେମ୍ବୁ ମୂଳ, ହରିଡ଼ା, ରାସ୍ନା, ଗନ୍ଧଶୁଣ୍ଠୀ, ମରିଚ ଓ ଶୁଣ୍ଠୀ ଏହି ସକଳ ଦ୍ରବ୍ୟ ଚୂର୍ଣ୍ଣ ସମପରିମାଣରେ ମିଶ୍ରିତ କରିବ । ବଣ୍ଟଷଦୁଷ୍ଣ ( କଅଁଳଗରମ ) ଜଳସହ ପ୍ରାତଃକାଳରେ ସେବନ କରିଲେ କଫଜ ଗ୍ରହଣୀ ବିନଷ୍ଟ ହୁଏ ଏବଂ ବଳ, ବର୍ଣ୍ଣ ଓ ଅଗ୍ନିର ବୃଦ୍ଧି ହୁଏ ।



୮୩—ବୃହତ୍ ଗଙ୍ଗାଧର ଚୂର୍ଣ୍ଣ ( ଗ୍ରହଣୀରେ )

ବେଲଶୁଣ୍ଠା, ଶିମୁଳ ଅଠା, ଅକାନବିନ୍ଧ ମୂଳ, ଧାତୁକୀ ଫୁଲ, ଧନିଅଁ, କରବା, ଶୁଣ୍ଠୀ, ମୁଥା ଅତୋଷୀ, ଅଫିମ, ଲୋଧ, କଞ୍ଚା ଡ଼ାଳିମ୍ବର ଚୋପା ଓ ପିତାକୋରୁଅଁ ଛେଲି, ପ୍ରତ୍ୟେକର ଚୂର୍ଣ୍ଣ ସମଭାଗ ଏବଂ କଜ୍ଜଳୀ ଦୁଇଭାଗ ଏକତ୍ରରେ ଖଲରେ ପକାଇ ମର୍ଦ୍ଦନ କରିବ । ମାତ୍ରା ୫ ରତିଠାରୁ ୨୪ ମଷା ପର୍ଯ୍ୟନ୍ତ ଅନୁପାନ ଚୋଲବହି ବା ଗୁଡ଼ଳଧୂଆପାଣି । ଏହାସେବନକଲେ ପ୍ରବଳ ଗ୍ରହଣୀ, ଅତିସାର, ନାନା ପ୍ରକାର କୋଷ୍ଠ ବ୍ୟାଧି ଏବଂ ଜ୍ୱର ପ୍ରଶମିତ ହୁଏ



୮୪—ଶୁଣ୍ଠ୍ୟାଦ୍ୟ ଚୂର୍ଣ୍ଣ ( ଅତିସାରରେ )

ଶୁଣ୍ଠୀ, ଅତିଭାଷୀ, ହିଙ୍ଗୁ, ମୁଥା, ଇନ୍ଦ୍ରଯବ ଓ ଚିତାମୂଳ ଏହାର ଚୂର୍ଣ୍ଣ ଉପଯୁକ୍ତ ମାତ୍ରାରେ ଉଷ୍ଣଜଳ ସହିତରେ ମିଶ୍ରିତ କରି ସେବନ କଲେ ଅତିସାର ଓ ଆମାତିସାର ନିବାରିତ ହୁଏ ।



୮୫—ବଡ଼ ଚତୁର୍ଭଦ୍ରକାଦ୍ୟ ଚୂର୍ଣ୍ଣ (ବାଳରୋଗରେ)

ମୁଥା, ପିପ୍ପଳୀ, ଅତୋଶୀ ଓ କାକଡ଼ାଶୃଙ୍ଗୀ, ପ୍ରତ୍ୟେକ ଦ୍ରବ୍ୟରୁ ସମଭାଗଚୂର୍ଣ୍ଣ ଏକତ୍ର ମିଶ୍ରିତ କରି ଦୁଇ ରତି ମାତ୍ରାରେ ମଧୁ ସହିତ ସେବନ କରାଇଲେ ଜ୍ୱରାତିସାର ଶ୍ୱାସ କାସ ଓ ବମି ପ୍ରଶମିତ ହୁଏ ।



୮୬—କର୍ପୂରାଦ୍ୟଚୂର୍ଣ୍ଣ ( ରାଜଯକ୍ଷ୍ମାରେ )

କର୍ପୂର, ଡାଲଚିନି, କାଙ୍କୋଲ, ଜାଇଫଳ ଓ ଜାଇତ୍ରୀ ପ୍ରତ୍ୟେକ ଚୂର୍ଣ୍ଣ ଏକଭାଗ ଲବଙ୍ଗଦୁଇଭାଗ, ଜଟାମାଂସୀ ତିନିଭାଗ, ମରିଚ ଚାରିଭାଗ, ପିପ୍ପଳୀ ପାଞ୍ଚଭାଗ, ଶୁଣ୍ଠି ଛଅଭାଗ ଏବଂ ସର୍ବସମଷ୍ଟିର ସମାନ ଚିନି ଏକତ୍ର ମିଶ୍ରିତ କରି ଉପଯୁକ୍ତ ପରିମାଣରେ ସେବନ କରିବ । ଏହାଦ୍ୱାରା କ୍ଷୟ କାସ, ଶ୍ୱାସ, ବକ୍ଷୋଜ୍ୱାଳା, ସ୍ୱରଭଙ୍ଗ ପିନସ, ବମି ଓ କଣ୍ଠରୋଗ ନିବାରିତ ହୁଏ । ଔଷଧଦ୍ୱେଷୀ ବ୍ୟକ୍ତି-ଗଣଙ୍କୁ ଏହି ଅନୁପାନର ସହିତ ମିଶ୍ରିତ କରି ସେବନ କରାଇବ ।



୮୭—ପିପ୍ପଲ୍ୟାଦ୍ୟ ଚୂର୍ଣ୍ଣ ( ହୃଦ୍ରୋଗରେ )

ପିପ୍ପଳୀ, ଅଳାଇଚ, ବଚ, ହିଙ୍ଗୁ, ଯବକ୍ଷାର, ସୈନ୍ଧବଲବଣ ସଚଳ ଲବଣ, ଶୁଣ୍ଠୀ ଓ ଯୁଆଣୀ, ଏହି ସକଳ ଦ୍ରବ୍ୟର ଚୂର୍ଣ୍ଣ ପ୍ରସ୍ତୁତ କରି ଟେଭାଲେମ୍ବୁ ରସ, କାଞ୍ଜିପାଣି, ଦହି, ମଦ୍ୟ ଏହି ଅନୁପାନ ଦ୍ୱାରା ସେବନ କରିବ । ଏହି ଦ୍ରବ୍ୟ ସେବନ ପୂର୍ବେ

ବମନ କଫାଦ୍ଧ ଦ୍ୱାରା ରୋଗୀକୁ ବମନ କରାଇ ରୋଗୀର କୋଷ୍ଠ ଶୁଦ୍ଧ କରିନେବ । ଏହା ହୃଦ୍ରୋଗ ନାଶକ ।



୮୮—ଲବଣୋତ୍ତମାଦ୍ୟା ଚୂର୍ଣ୍ଣ ( ଅର୍ଶରେ )

ସୈନ୍ଧବ ଲବଣ, ଚିତାମୂଳ, ଇନ୍ଦ୍ର ଯବ, କରଞ୍ଜ ମୂଳଛେଲି ଓ ମହୁ, ନିମ୍ବଛେଲି ଏ ସକଳଦ୍ରବ୍ୟ ସମଭାଗରେ ଏକତ୍ର ମିଶ୍ରିତ କରିବ ଏବଂ ଉପଯୁକ୍ତ ମାତ୍ରାରେ ଘୋଳ ଦହି ସହିତ ମିଶ୍ରିତ କରି ପାତ ଦିନ ସେବନ କରିବ । ଏହା ଦ୍ୱାରା ଅର୍ଶରୋଗ ବିନଷ୍ଟ ହୁଏ ।



୮୯—ନାଗର ଚୂର୍ଣ୍ଣ [ ଉଦାବର୍ତ୍ତରେ )

ତିନ୍ତି ତୋଳା, ତିବୃଡ଼ି ଚୂର୍ଣ୍ଣ ଦୁଇତୋଳା ଓ ପିପ୍ପଳୀଚୂର୍ଣ୍ଣ ଗ୍ଧରି ତୋଳା, ଏକତ୍ର ମିଶ୍ରିତ କରି ଅଧତୋଳା ମାତ୍ରାରେ ଭୋଜନର ପୂର୍ବେ ମହୁ ସହିତ ସେବନ କରିବ । ଏହା ଦ୍ୱାରା ଉଦାବର୍ତ୍ତ ଏବଂ ମଳର କଠିଣତା ନିବାରଣ ହୁଏ ।



୯୦—ରୋହିତକାଦ୍ଧ ଚୂର୍ଣ୍ଣ ( ପ୍ଳୀହା ଓ ଯକୃତରେ )

ରୋହିତକ ଛେଲି, ଯବକ୍ଷାର ଚିରେତା, କଟୁକୀ, ମୁଥା, ନିଶାଦଳ, ଅଡୋଷୀ ଓ ଶୁଣ୍ଠି ପ୍ରତ୍ୟେକର ଚୂର୍ଣ୍ଣ ସମଭାଗରେ ଏକତ୍ର ମିଶ୍ରିତ କରି ଏକଅଣା ଠାରୁ ଦୁଇଅଣା ପର୍ଯ୍ୟନ୍ତ ମାତ୍ରାରେ ପ୍ରୟୋଗ କରିବ । ଏହା ଦ୍ୱାରା ପ୍ଳୀହା ଓ ଯକୃତ୍ ରୋଗ ଉପଶମ ହୁଏ ।



୯୧—ହରିଦ୍ରାଦ୍ଧ ଚୂର୍ଣ୍ଣ ( ହିକ୍କା ଓ ଶ୍ୱାସରେ )

ହଳଦୀ, ମରିଚ, ଦ୍ରାକ୍ଷା, ପୁରାତନ ଗୁଡ଼, ରାସ୍ନା, ପିପ୍ପଳୀ ଓ ଶୁଣ୍ଠୀ ଏହି ସମୁଦାୟ ଦ୍ରବ୍ୟର ସମଭାଗରେ ଉପଯୁକ୍ତ ପରିଣାମ ସୋରିଷତେଲ ମିଶ୍ରିତ କରି ଉପଯୁକ୍ତ ମାତ୍ରାରେ ସେବନ କଲେ ପ୍ରାଣନାଶକ ଉତ୍କଟ ଶ୍ୱାସ ନିବାରିତ ହୁଏ ।



୯୨—ପଥ୍ୟାଦି ଚୂର୍ଣ୍ଣ ( କଫାତିସାରେ )

ହରିଡ଼ା, ଅକାନବାନ୍ଧ, ବଚ, କୁଡ଼,ଚିତାମୂଳ ଓ କଟୁକ୍କା ଏହି ସକଳ ଦ୍ରବ୍ୟର ଚୂର୍ଣ୍ଣ ଉଷ୍ଣଜଳର ସହିତ ସେବନ କଲେ କଫଜ ଅତିସାର ପ୍ରଶମିତ ହୁଏ । ଏହା ବିରେଚକ ଔଷଧ,ଏହାର ମାତ୍ର ରୋଗ ଓ ରୋଗୀର ଅବସ୍ଥା ଦେଖି ଲକ୍ଷ କରିବା ହେବେ ।



୯୩—ନାଗରାଦି ଚୂର୍ଣ୍ଣ ( ଗ୍ରହଣୀରେ )

ଶୁଣ୍ଠୀ, ଅତୋଷୀ,ମୁଥା,ଧାଉଁକ୍କ ଫୁଲ, ରସାଞ୍ଜନ,ପିତାକୋରୁଅଁ ଛେଲି,ଇନ୍ଦ୍ରଯବ,ବେଲ ଶୁଣ୍ଠୀ,ଅକାନବାନ୍ଧ ଓ କଟୁକ୍କା,ଏଥିର୍ ଚୂର୍ଣ୍ଣ ସମଭାଗନେଇ ତହିଁରେକଥିତ୍ ମଧୁପ୍ରକ୍ଷେପ ଦେଇ ଚାଉଳଧୂଆଜଳ ସହିତ ସେବନକଲେ ଏହାଦ୍ୱାରାପିତ୍ତଜ ଗ୍ରହଣୀଜନିତ ରକ୍ତଭେଦ ଅର୍ଶ, ହୃଦ୍ରୋଗ ଓ ଅମାଶୟ ରୋଗ ନିବାରିତ ହୁଏ । ମାତ୍ରା ଚାରି ଅଣାଠାରୁ ଆଠଣା ପର୍ଯ୍ୟନ୍ତ ।



୯୪—କୁଷ୍ଠାଦି ଚୂର୍ଣ୍ଣ—( ଜ୍ୱର ରୋଗେ )

କୁଡ଼, ଦନ୍ତୀ, ଯବକ୍ଷାର, ତ୍ରିକଟୁ, ତ୍ରିଫଳା, ସୈନ୍ଧବ, ବିଟ ଓ ସଚଳ ବଚ, କୃଷ୍ଣଜୀରା, ଯୁଆଣୀ, ହିଙ୍ଗୁ, ସର୍ଜ୍ଜିକ୍ଷାର, ଗୁଲୁଞ୍ଚିକାଠ, ଚିତାମୂଳ ଓ ଶୁଣ୍ଠୀ, ଏଥିର ଚୂର୍ଣ୍ଣ ସମ ଭାଗରେ ଗ୍ରହଣ କରି ଉପଯୁକ୍ତ ପରିମାଣରେ ଉଷ୍ଣଜଳ ସହିତ ପାନ କଲେ ଏଥିରେ ବାତୋଦର ରୋଗନଷ୍ଟ ହୁଏ ।



୯୫—ରସାଞ୍ଜନାଦି ଚୂର୍ଣ୍ଣ—( ଗ୍ରହଣୀରେ )

ରସାଞ୍ଜନ, ଅତୋଷୀ, ଇନ୍ଦ୍ରଯବ, ପିତାକୋରୁଅଁ ଛେଲି,ଶୁଣ୍ଠୀ ଓ ଧାଉଁକ୍କା ଫୁଲ ଏହି ସମସ୍ତର ଚୂର୍ଣ୍ଣ ମଧୁ ଓ ଚାଉଳଧୂଆ ପାଣିରେ ସେବନ କଲେ ପିତ୍ତ ଗ୍ରହଣୀ, ରକ୍ତାତିସାର ଓ ଅର୍ଶ ରୋଗ ନିବାରିତ ହୁଏ ।



### ୯୬—ପଥ୍ୟାଦ୍ୟ ଚୂର୍ଣ୍ଣ—[ ଆମବାତରେ ]

ହରଡ଼ା, ଶୁଣ୍ଠୀ ଓ ଯୁଆଣୀ, ଏହାର ଚୂର୍ଣ୍ଣ ସମଭାଗରେ ମିଶ୍ରିତ କରି ଅଧ ତୋଳା ମାତ୍ରାରେ ତକ୍ର, କାଞ୍ଜି ବା ଉଷ୍ଣଜଳ ସହିତ ସେବନ କଲେ ହୃଦ୍ରୋଗ, ଆମବାତ, ଶୋଥ, ଅଗ୍ନିମାନ୍ଦ୍ୟ, ପୀନସ, କାସ, ସ୍ୱରଭେଦ ଓ ଅରୁଚକ ପ୍ରଭୃତି ରୋଗ ପ୍ରଶମିତ ହୁଏ ।



### ୯୭—ନିମ୍ବାଦ୍ୟ ଚୂର୍ଣ୍ଣ ( ବାତ ରକ୍ତରେ )

ନିମ୍ବଛେଲି, ଗୁଡ଼ୁଚି, ହରଡ଼ା, ଅଁଳା ଓ ସୋମରାଜୀ ପ୍ରତ୍ୟେକ ଦ୍ରବ୍ୟ ଏକ ପଲ ଏବଂ ଶୁଣ୍ଠୀ ବିଡ଼ଙ୍ଗ, ଚିତ୍ରକୁଣ୍ଡାମୂଳ, ପିପ୍‌ପଳୀ, ବଚ, ଜୀରା, କଟୁକୀ, ଖଇର କାଠ, ସୈନ୍ଧବ, ଯବକ୍ଷାର ହଳଦୀ, ଦାରୁହଳଦୀ, ମୁଥା ଦେବଦାରୁ ଓ କୁଡ଼ ପ୍ରତ୍ୟେକ ଦ୍ରବ୍ୟର ଚୂର୍ଣ୍ଣ ଦୁଇତୋଳା ଏକତ୍ର ମିଶ୍ରିତ କରି ଚାରିଅଣା ମାତ୍ରାରେ ଏହି ଚୂର୍ଣ୍ଣ ଗୁଡୁଚି କ୍ୱାଥ ଅନୁପାନ ସହିତରେ ପ୍ରୟୋଗ କଲେ ଏହା ଦ୍ୱାରା ବାତରକ୍ତ, କୁଷ୍ଠ, ପିଡ଼କା କଣ୍ଡୁ, ବ୍ରଣ, କାମଳା, ଆମବାତ ଜନିତ ଶୋଥ, ପ୍ଲୀହା ଏବଂ ଗୁଳ୍ମ ପ୍ରଭୃତି ରୋଗ ଉପଶମ ହୁଏ ।



### ୯୮—ବିଜୟା ଚୂର୍ଣ୍ଣ ( ରାଜଯକ୍ଷ୍ମାରେ )

ଜବାବଚନ୍ଦ୍ର, କଇଁ ମୂଳ, ପିପ୍‌ପଳୀ, ଗଜପିପ୍‌ଳୀ, ମୁଥା, ଲବଙ୍ଗ, ଗନ୍ଧଶୁଣ୍ଠୀ ତାଲିଶପତ୍ର, ଶ୍ୱେତଚନ୍ଦନ, ଯଷ୍ଟିମଧୁ, କର୍ପୂର, ନୀଳକଇଁ, ଅଳାଇଚ, ଗୋରକ୍ଷ, ଗୁଗ୍‌ଗୁଳ, ପାନମହୁରି, ଦାଇତ୍ତଙ୍କ ମଞ୍ଜୀ, ବେଣାଚେର ଗୁଡ଼ୁତ୍ୱକ, କୁଙ୍କୁମ, ଦ୍ରାକ୍ଷା, ଜୀରା, ଅଭ୍ର ଭସ୍ମ, ତଗରପାଦ ଜାଇଫଳ ଓ ଶୁଣ୍ଠୀ ପ୍ରତ୍ୟେକ ଦ୍ରବ୍ୟ ସମାନ ଭାଗ । ଏ ସମୁଦାୟ ଓଜନରେ ଯେତେ ହେବ ସେତିକ ପରିମାଣ ଚିନିରେ ମିଶାଇବ । ଏହି ଚୂର୍ଣ୍ଣ ଉପଯୁକ୍ତ ମାତ୍ରାରେ ସେବନ କଲେ ଅତି ଉତ୍କଟ ଯକ୍ଷ୍ମା, କାଶ, ଶ୍ୱାସ ଅରୁଚି ଜ୍ୱର, ଅତିସାର

ବାନ୍ତି, ପାଣ୍ଡୁ, ସ୍ୱରଭଙ୍ଗ, ତମକ ଶ୍ୱାସ, ପ୍ରମେହ, ଗ୍ରହଣୀଷସ୍ମୃ, ନପୁଂସକତ୍ୱ, ଅଗ୍ନିମାନ୍ଦ୍ୟ, ପ୍ରଦର, କୃମି, ମୂତ୍ରକୃଚ୍ଛ୍ର, ଓ ଶର୍କରା ରୋଗ ନିବାରିତ ହୁଏ ।



୯୯—ଏଳାଦି ଚୂର୍ଣ୍ଣ ( ବାନ୍ତିରୋଗେ )

ଅଳାଇଚ, ଲବଙ୍ଗ, ନାଗେଶ୍ୱର, ବରକୋଳି ମଞ୍ଜିର ଶସ, ଖଇ, ପ୍ରିଅଙ୍ଗୁ, ମୁଥା, ଚନ୍ଦନ ଓ ପିପ୍ପଳୀ ଏ ସବୁ ଦ୍ରବ୍ୟସମାନ ଭାଗରେ ଆଣି ଚୂର୍ଣ୍ଣ କରିବ । ଏହି ଚୂର୍ଣ୍ଣ ଉପଯୁକ୍ତ ମାତ୍ରାରେ ମଧୁ ଓ ଚିନି ସହିତ ସେବନ କଲେ କଫଜ ପିତ୍ତଜ ଓ ବାତଜ, ବାନ୍ତି ପ୍ରଶମିତ ହୁଏ ।



୧୦୦—କର୍କଟୀ ବୀଜାଦି ଚୂର୍ଣ୍ଣ ( ପ୍ରମେହରେ )

ଫୁଟି ମଞ୍ଜି, ସୈନ୍ଧବ ଲବଣ ଓ ତ୍ରିଫଳା ଏହି ସକଳ ଦ୍ରବ୍ୟର ଚୂର୍ଣ୍ଣ ସମ ଭାଗରେ ନେଇ ଉଷ୍ଣ ଜଳ ସହିତ ପାନ କଲେ ମେହ ରୋଗ, ମୂତ୍ର ରୋଗ ନିବାରିତ ହୁଏ ।

୧୦୧—ଚତୁର୍ଭଦ୍ରିକା ଚୂର୍ଣ୍ଣ ( ବାଳରୋଗେ )

ମୁଥା, ପିପ୍ପଳୀ, ଅତୋଷୀ ଓ କାକଡ଼ାଶୃଙ୍ଗୀ ଏହି ପଦାର୍ଥ ଚୂର୍ଣ୍ଣ ସମ ଭାଗ ନେଇ ମଧୁ ସହିତରେ ଗୁଳି ଖୁଆଇଲେ ବାଳକର ଜ୍ୱର, ଅତିସାର, ଶ୍ୱାସ, କାଶ ଓ ବମନ ନିବାରିତ ହୁଏ ।



୧୦୨—ଦାଡ଼ିମ୍ବାଷ୍ଟକ ଚୂର୍ଣ୍ଣ [ ଗ୍ରହଣୀ ରୋଗେ ]

ବଂଶଲୋଚନା ୨ ତୋଳା, ଡ଼ାଲଚିନି, ତେଜପତ୍ର, ବଡ଼-ଅଳାଇଚ ଓ ନାଗେଶ୍ୱର ଏହିଦ୍ରବ୍ୟ ପ୍ରତ୍ୟେକ ୪ ତୋଳା, ଯୁଆଣୀ ଧନିଆଁ, କୃଷ୍ଣଜୀରା, ପିପ୍ପଳୀ, ମୂଳ ଓ ତ୍ରିକଟୁ ପ୍ରତ୍ୟେକ, ୮ ତୋଳା, ଡ଼ାଳିମ୍ବ ଫଳ ଛେଲି ୮ ପଳ ଏବଂ ଚିନି ୮ ପଳ ଏକତ୍ର ମିଶ୍ରିତ କରି ସେବନ କଲେ କପିତ୍ଥାଷ୍ଟ ଚୂର୍ଣ୍ଣୋକ୍ତ ସମୁଦାୟ ପୀଡ଼ା ନିବାରିତ ହୁଏ ।

### ୧୦୩—ରାସ୍ନାଦି ଚୂର୍ଣ୍ଣ ( ଗ୍ରହଣୀରେ )

ରାସ୍ନା, ହରିଡ଼ା, ଶୁଣ୍ଠୀ, ଗଜଶୁଣ୍ଠୀ, ପିପ୍ପଳୀ, ମରିଚ, ଯବକ୍ଷାର, ସାଚୀକ୍ଷାର, ପଞ୍ଚଲବଣ, ପିପ୍ପଳୀ ମୂଳ ଓ ଟେଭ୍ରିଲେମ୍ବୁ ଏହାର ଚୂର୍ଣ୍ଣ ସମଭାଗରେ ମିଶ୍ରିତ କରି ଉଷ୍ଣ ଜଳ ସହିତ ପାନ କରିଲେ କଫଜ ଗ୍ରହଣୀ ନିବାରିତ ହୁଏ ।

### ୧୦୪—ଦଶନ ସଂସ୍କାର ଚୂର୍ଣ୍ଣ ( ଦନ୍ତରୋଗେ )

ଶୁଣ୍ଠୀ, ହରିଡ଼ା, ମୁଥା, ଖଇର, କର୍ପୂର, ଗୁଆଭସ୍ମ, ମରିଚ, ଲବଙ୍ଗ ଓ ଡ଼ାଲଚିନି ପ୍ରତ୍ୟେକର ଚୂର୍ଣ୍ଣ ସମାନ ଭାଗରେ ଏକତ୍ର କଲେ ଯେତେ ହେବ ସେହି ପରିମାଣରେ ଫୁଲଖଡ଼ି ଚୂର୍ଣ୍ଣ ତାହାଂ ସଙ୍ଗେ ମିଶାଇ ଏହି ଚୂର୍ଣ୍ଣ ଦ୍ୱାରା ପ୍ରତିଦିନ ଦାନ୍ତ ଘଷିଲେ ସମସ୍ତ ପ୍ରକାର ଦାନ୍ତ ରୋଗ ଓ ବହୁ ପ୍ରକାର ମୁଖରୋଗ ନିବାରିତ ହୁଏ ।

### ୧୦୫—ସଷଣାଢ୍ୟ ଚୂର୍ଣ୍ଣ ( ଅତିସାରରେ )

ପ୍ରବଳ ଆମାତିସାରରେ ଶୁଣ୍ଠୀ, ପିପ୍ପଳୀ, ମରିଚ, ଅଜୋଷୀ, ହିଙ୍ଗୁ, କୁଟବେଲ, ସଚଳ ଲବଣ ଓ ହରିଡ଼ା ଚୂର୍ଣ୍ଣ ସମଭାଗରେ ମିଶ୍ରିତ କରି, ଉପଯୁକ୍ତ ପରିମାଣରେ ଉଷ୍ଣ ଜଳ ସହ ପାନ କରିବାକୁ ହେବ । ଅଥବା ପିପ୍ପଳୀ, ପିପ୍ପଳୀ ମୂଳ, ଗଜ ପିପ୍ପଳୀ ଓ ଚିତାମୂଳ ଏଥିର ଚୂର୍ଣ୍ଣ ପୂର୍ବୋକ୍ତ ରୂପରେ ଗରମ ଜଳ ସହିତ ପାନ କରାଇବ ।

### ୧୦୬—ହିବୁତାଦି ଚୂର୍ଣ୍ଣ ( ହୃଦ୍‌ରୋଗରେ )

ଡହୁଡ଼ୀ, ଗଜଶୁଣ୍ଠୀ କୁରୁବେଲ, ରାସ୍ନା, ଶୁଣ୍ଠୀ ହରିଡ଼ା କୁଡ଼ି ଏହି ସକଳ ଦ୍ରବ୍ୟର ଚୂର୍ଣ୍ଣ ଅଥବା ଗୋମୂତ୍ରର ସହିତ ଏହାର କ୍ୱାଥ ପ୍ରସ୍ତୁତ କରି ପାନ କଲେ କଫଜ ହୃଦ୍‌ରୋଗ ବିନଷ୍ଟ ହୁଏ ।

### ୧୦୭--କର୍ପୂରାଦ୍ୟ ଚୂର୍ଣ୍ଣ (ଗ୍ରହଣୀରେ)

କର୍ପୂର, ଶୁଣ୍ଠୀ, ପିପ୍ପଳୀ, ମରିଚ, ଗୁଆ, ପଞ୍ଚଲବଣ, ହରିତକୀ, ସାଚୀକ୍ଷାର, ଯବକ୍ଷାର ଓ ଟେଭ୍ରଲେମ୍ବୁ ଏହାର ଚୂର୍ଣ୍ଣ ସମଭାଗ ନେଇ ଉଷ୍ଣଜଳ ସହିତ ପାନ କଲେ ବାତ, ଶ୍ଳୈଷ୍ମିକ, ଗ୍ରହଣୀ ଦୋଷ ବିନଷ୍ଟ ହୁଏ । ଏଥିରେ ବଳ, ବର୍ଣ୍ଣ ଓ ଅଗ୍ନିର ବୃଦ୍ଧି ହୁଏ ।



### ୧୦୮--ନବାୟସ ଚୂର୍ଣ୍ଣ ( ପାଣ୍ଡୁ ରୋଗରେ )

ତ୍ରିକଟୁ, ତ୍ରିଫଳା, ମୁଥା, ବିଡ଼ଙ୍ଗ ଓ ଚିତାମୂଳ, ପ୍ରତ୍ୟେକ ଏକ ତୋଳାଲେଖାଏଁ, ଲୌହ ୯ ତୋଳା, ଏହି ସମୁଦାୟକୁ ଜଳରେ ମର୍ଦ୍ଦନ କରି ବଟିକା ବା ଚୂର୍ଣ୍ଣ କରିବ । ପାଣ୍ଡୁ ଓ କାମଳାଦି ପ୍ରଭୃତି ରୋଗରେ ମହୁ ଓ ଘିଅ ସହିତ ସେବନ କରିବ । ଏକ ରତିଠାରୁ ଆରମ୍ଭ କରି କ୍ରମଶଃ ୯ ରତି ପର୍ଯ୍ୟନ୍ତ ମାତ୍ରା ବ୍ୟବସ୍ଥା କରିବ ।



### ୧୦୯--ଦାଡ଼ିମ୍ବାଦି ଚୂର୍ଣ୍ଣ (ଅରୋଚକରେ)

ଅମ୍ଳ ଡାଡ଼ିମର ଚୂର୍ଣ୍ଣ ୨ ପଳ, ଖଣ୍ଡ ଗୁଡ଼ ୮ ପଳ, ଚବ ତ୍ରିକଟୁ ୩ ପଳ, ତ୍ରିସୁଗନ୍ଧ ( ଡ଼ାଲଚିନି, ଅଳାଇଚ, ତେଜପତ୍ର ) ୧ ପଳ, ଏହି ଗୁଡ଼ିକ ଏକତ୍ର ମିଶ୍ରିତ କରି ଉପଯୁକ୍ତ ପରିମାଣରେ ସେବନ କଲେ ଅରୁଚି, ଅଗ୍ନିମାନ୍ଦ୍ୟ, ପୀନସ ଓ ଜ୍ୱର ଶାନ୍ତ ହୋଇଥାଏ ।



### ୧୧୦—ରସାଦି ଚୂର୍ଣ୍ଣ ( ତୃଷ୍ଣାରୋଗେ )

ପାରଦ ୧ ଭାଗ, ଗନ୍ଧକ ୨ ଭାଗ, କର୍ପୂର ୩ଭାଗ, ଶିଳାଜତୁ ୪ ଭାଗ, ବେଣାମୂଳ ୫ ଭାଗ, ମରିଚ ୬ ଭାଗ, ଚିନି ୭ଭାଗ ଏକତ୍ର ଚୂର୍ଣ୍ଣ କରି ପ୍ରାତଃକାଳରେ ୩ ରତି ପରିମାଣ ସେବନ କରିବା କର୍ତ୍ତବ୍ୟ । ଅନୁପାନ—ବାସିଜଳ, ଏହା ତୃଷାନାଶକ ।



## ୧୧୧--ବୈଶ୍ୱାନର ଚୂର୍ଣ୍ଣ ( ଆମ ବାତରେ )

ସୈନ୍ଧବ ଲବଣ ୨ଭାଗ, ଯୁଆଣୀ ୪ଭାଗ, ଶୁଣ୍ଠୀ ୪ ଭାଗ, ହରିଡା ୧୨ ଭାଗ ଏ ସମୁଦାୟ ଚୂର୍ଣ୍ଣ ମିଶ୍ରିତ ଓ ଏକତ୍ର ମର୍ଦ୍ଦନ କରି ଗ୍ରହଣ କରିବ । ଅନୁପାନ--ସାଧାରଣତଃ ଗରମ ଜଳ । ଏହି ଔଷଧ ସେବନ କଲେ ଆମବାତ, ଗୁଳ୍ମ, ଶୂଳ, ଅର୍ଶ, ଅନାହ ପ୍ରଭୃତି ନାନାରୋଗ ଉପଶମିତ ହୁଏ । ଏହା ବାୟୁର ଅନୁଲୋମକ ।



## ୧୧୨- ପ୍ରମେହାନ୍ତକ ଚୂର୍ଣ୍ଣ (ପ୍ରମେହରେ)

ନୂତନ ଓ ପୁରାତନ ପ୍ରମେହରେ ପ୍ରଥମେ କର୍ପୂର, ଶିଳା ଇତ୍ଥୁ ଖଣ୍ଡ କଦଳୀନଅଁରେ ଭାଜିବ, ତାହା ଭସ୍ମ ହେଲେ ପରେ ତହିଁରେ ଅଳ୍ପ ଗେରୁ ମାଟି ମିଶାଇ ମର୍ଦ୍ଦନ କରି ବ୍ୟବହାର କରିବ । ପ୍ରବରରେ କୁଶମୂଳ ବା ଗୁଳୁଚଧୂଆ ପାଣିରେ ପ୍ରମେହରେ କନ୍ଦ ପଣାରେ ୪ ରତିଠାରୁ ୧୦ ରତି ପର୍ଯ୍ୟନ୍ତ ବ୍ୟବହାର କରିବ ।



## ୧୧୩--ବାଳଚତୁର୍ଭଦ୍ରିକା ଚୂର୍ଣ୍ଣ (ବାଳରୋଗେ)

ମୁଥା, ପିପ୍ପଳୀ, ଅତୋଷୀ ବା କକଡ଼ାଶୃଙ୍ଗୀ ଏହି ସମସ୍ତ ପଦାର୍ଥର ଚୂର୍ଣ୍ଣ ମଧୁ ସହିତ ସେବନ କଲେ ବାଳକର ଜ୍ୱରାତି-ସାର, ଶ୍ୱାସ, କାଶ ବା ବମନ (ବାନ୍ତି) ନିବାରିତ ହୁଏ ।



## ୧୧୪—ରଜନାଦି ଚୂର୍ଣ୍ଣ (ବାଳରୋଗେ)

ହଳଦୀ, ଦେବଦାରୁ, ସରଳକାଠ, ଗଜପିପ୍ପଳୀ, ବୃହତ କଣ୍ଟକାରି, କୃଷ୍ଣପର୍ଣ୍ଣି, ଶୌପ ଏହି ପଦାର୍ଥ ମାନଙ୍କର ପ୍ରତ୍ୟେକ ସମାନ ଚୂର୍ଣ୍ଣ ଘୃତ ଓ ମଧୁ ସହିତ ଲେହନ କରାଇଲେ ବାଳକର ଜ୍ୱରାତିସାର ବା ପାଣ୍ଡୁ ପ୍ରଭୃତି ଯାବତୀୟ ବାଳରୋଗ ଅରୋଗ୍ୟ ହୋଇ ଅଗ୍ନିଶକ୍ତି ବୃଦ୍ଧି ଲାଭ ହୋଇଥାଏ ।



୧୧୫--ପୁଷ୍କରାଦ୍ଯ ଚୂର୍ଣ୍ଣ (ବାଳରୋଗେ)

କୁଡ଼, ଅତେଈଷୀ କକଡ଼ାଶୃଙ୍ଗୀ, ପିପ୍‌ପଳୀ, ଦୁଲ୍ଲଭି ଏ ପଦାର୍ଥ ଗୁଣ୍ଡ଼କର ଚୂର୍ଣ୍ଣ ମଧୁ ସହିତ ଲେହନ କଲେ ବାଳକମାନଙ୍କର ପଞ୍ଚପ୍ରକାର କାସ ନିବାରିତ ହୁଏ ।



୧୧୬--ଲବଙ୍ଗ ଚତୁସମ ଚୂର୍ଣ୍ଣ (ବାଳରୋଗେ)

ଜାଇଫଳ, ଲବଙ୍ଗ, ଜୀରା ଓ ଠୋଙ୍ଗଣାଖଇ ଏହି ପଦାର୍ଥ ସମଭାଗରେ ଚୂର୍ଣ୍ଣ କରି ଏକତ୍ର କରିବ । ଚିନି ଓ ମଧୁ ସହିତ ଅବଲେହ ପ୍ରସ୍ତୁତ କରି ଆମାତିସାର ଓ ଅତ୍ୟନ୍ତ ଶୂଳ ଶାନ୍ତି ପାଇଁ ବାଳକମାନଙ୍କୁ ଦେବ ।



୧୧୭---ବାଳପୂର୍ଣ୍ଣ ଚୂର୍ଣ୍ଣ [ ଶ୍ୱାସ ଓ କାଶରେ ]

ପ୍ରଥମେ ଶ୍ବେତଅର୍କମୂଳ ଆଣି ତାହାର ମୂଳର ଛେଲିଗୁଣ୍ଡ଼ିକା ଅନ୍ତର୍ଧୂମରେ ଭସ୍ମ କରିବ । ସେହି ଭସ୍ମ ୧ ତୋଳା, କସ୍ତୁରୀ ଅଧ ରତି କର୍ପୂର ଗୁରିଅଣା, କକଡ଼ାଶୃଙ୍ଗୀ ଚୂର୍ଣ୍ଣ ଦୁଇ ଅଣା, ଯଷ୍ଟି-ମଧୁ ଚୂର୍ଣ୍ଣ ଦୁଇଅଣା, ଗୁଡ଼ୁର୍ଜାତକ ଦୁଇଅଣା, ଏହା ଏକତ୍ର ମିଶାଇ ପ୍ରସ୍ତୁତ କରିବ । ଏହାର ମାତ୍ରା ବାଳକଠାରେ ଅଧ ଧାନ ଠାରୁ ବୟସ ଭେଦରେ ୨ଧାନ ପର୍ଯ୍ୟନ୍ତ ପୂର୍ଣ୍ଣ ବୟସ୍କ ବ୍ୟକ୍ତିମାନଙ୍କ ପକ୍ଷରେ ୩ଧାନ, ମଧୁ ଅନୁପାନ । ଏହା ଶ୍ୱାସ ଓ କାସର ଉତ୍କୃଷ୍ଟ ଔଷଧ ।



୧୧୮---ପ୍ରିୟଙ୍ଗ୍ୱାଦ୍ୟ ଚୂର୍ଣ୍ଣ (ରକ୍ତପିତ୍ତରେ)

ପ୍ରିୟଙ୍ଗୁ, ଲୋଧ, ରସାଞ୍ଜନ ଓ ଗେରୁ ଏସବୁଦ୍ରବ୍ୟ ସମାନ ଭାଗରେ ଆଣି ଚୂର୍ଣ୍ଣ କରି ମଧୁ ଓ ଘିଅ ସହିତ ସେବନ କଲେ ନାସା, ମୁଖ, ଲିଙ୍ଗ ଓ ଗୁହ୍ୟଦ୍ୱାରରୁ ନିର୍ଗତ ହେବା ରକ୍ତପିତ୍ତ ନିବାରିତ ହୁଏ ।

( ବୃହତ୍ ଚୂର୍ଣ୍ଣକାର୍ଣ୍ଣବ ପ୍ରଥମଭାଗ ସମାପ୍ତ )

---

ଓଡ଼ିଶା କୋହିନୂର ପ୍ରେସ୍, ଚୌଧୁରୀ ବଜାର କଟକରେ
ଏସ୍, ଅମିନୁଲ ଆଇ, ଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ—୧୯୫୧

